

# ଶିକ୍ଷକ ସେ ଅଲିଭ ଆଲୋକ

ସଙ୍କଳକ · ଜଗନ୍ନାଥ ମହାନ୍ତି

# ଶିକ୍ଷକ ସେ ଅଲଭ୍ୟ ଆଲୋକ

ସଙ୍କଳକ
ଅଧ୍ୟାପକ ଡକ୍ଟର ଜଗନ୍ନାଥ ମହାନ୍ତି

ବିଦ୍ୟାପୁରୀ

SIKSHAKA SE ALIVA ALOKA
Compiled by Dr. Jagannath Mohanty
Publishers : Vidyapuri, Cuttack 753002
Second Edition 1985

ପ୍ରଥମ ପ୍ରକାଶ ସେପ୍ଟେମ୍ବର ୧୯୭୭
ଦ୍ୱିତୀୟ ସଂସ୍କରଣ ମାର୍ଚ୍ଚ ୧୯୮୫

ପ୍ରକାଶକ
ଶ୍ରୀ ପୀତାମ୍ବର ମିଶ୍ର
ବିଦ୍ୟାପୁରୀ
ବାଲୁବଜାର, କଟକ ୭୫୩୦୦୨

ମୁଦ୍ରଣ
ପ୍ରତିଭା ପ୍ରେସ
ତେଲେଙ୍ଗା ବଜାର, କଟକ ୭୫୩୦୦୯

ମୂଲ୍ୟ ଟ ୧୮·୦୦
ସାଦା ବହିର ଟ ୧୫·୦୦

## ଦ୍ୱିତୀୟ ସଂସ୍କରଣ ପାଇଁ ପଦେ

ଅତ୍ୟନ୍ତ ଆନନ୍ଦର ବିଷୟ ଯେ, 'ଶିକ୍ଷକ ସେ ଅଳଙ୍ଘ ଆଲୋକ'ର ପ୍ରଥମ ସଂସ୍କରଣ ଶିକ୍ଷକ ସମାଜ ଓ ଲେଖକ ମହଲରେ ଖୁବ୍ ଆଦୃତ ହୋଇଛି । ଫଳତଃ, ତିନବର୍ଷ ହେଲା ଏହି ବହି ସରିଯାଇଛି ଏବଂ ପୁସ୍ତକଟିର ଦ୍ୱିତୀୟ ସଂସ୍କରଣ ପାଇଁ ପ୍ରକାଶକ ମହାଶୟଙ୍କୁ ଅନୁରୋଧ କରିଆସିଛି । କେତେକ ନୂତନ ଗଳ୍ପ ଏଥର ସଂକଳନରେ ସନ୍ନିବେଶିତ କରିବାକୁ ପ୍ରକାଶକଙ୍କ ପରାମର୍ଶକୁ ଗ୍ରହଣ କରି ମୁଁ ଦୁଇଜଣ ଲବ୍ଧପ୍ରତିଷ୍ଠା କଥାଶିଳ୍ପୀ —ଅଧ୍ୟାପିକା ଡକ୍ଟର ପ୍ରତିଭା ରାୟ ଓ ଅଧ୍ୟାପିକା ଶାନ୍ତିଲତା ମହାପାତ୍ରଙ୍କର ଦୁଇଟି ଗଳ୍ପ ସଂଗ୍ରହ କରି ପାରିଛି । ଉକ୍ତ ଗଳ୍ପ ଦୁଇଟି ଏଥିରେ ପ୍ରକାଶ କରିବାକୁ ସୁଯୋଗ ଦେଇଥିବାରୁ ସେମାନଙ୍କ ନିକଟରେ ମୋର କୃତଜ୍ଞତା ଜ୍ଞାପନ କରୁଛି । ନୂତନ ସଂକଳନଟି ଅଧିକ ସମୃଦ୍ଧ ହୋଇପାରିଛି ।

ପୁସ୍ତକଟିର ରୟାଲିଟି ବାବଦ ଅର୍ଥ ମୁଁ ପ୍ରକାଶକଙ୍କ ଠାରୁ ପାଇ ଭବିଷ୍ୟତରେ କୌଣସି ମହତ୍ କାର୍ଯ୍ୟରେ ବିନିଯୋଗ କରିବାକୁ ରଖିଛି । ଆଶା, ପାଠକମାନଙ୍କ ଉତ୍ସାହ ଲାଭକରି ଏହି ପାଣ୍ଠି ଆଶାନୁରୂପ ଭାବରେ ବୃଦ୍ଧିପ୍ରାପ୍ତ ହେବ ଏବଂ ଶିକ୍ଷା ଓ ଶିକ୍ଷକ ସମାଜର ମଙ୍ଗଳ ନିମନ୍ତେ ବ୍ୟୟିତ ହୋଇପାରିବ । ଏହି ସଦୁଦ୍ଦେଶ୍ୟ ପୂରଣ କ୍ଷେତ୍ରରେ ସମସ୍ତଙ୍କର ସଦିଚ୍ଛା ଓ ସହଯୋଗ କାମନା କରୁଛି ।

ଭୁବନେଶ୍ୱର
ତା ୨୦ । ୩ । ୮୫

ସଂକଳକ

# ସଂକଳନର ପୃଷ୍ଠଭୂମି

୧୯୬୫ ମସିହା । 'ରାଜ୍ୟ ଶିକ୍ଷା ପ୍ରତିଷ୍ଠାନ'ର ପ୍ରାରମ୍ଭିକ ସମୟ । ଶିକ୍ଷାକ୍ଷେତ୍ରରେ ଏକ ବିପ୍ଳବାତ୍ମକ ପରିବର୍ତ୍ତନ ଆଣିବାକୁ ପ୍ରତିଷ୍ଠାନର ପ୍ରାଣାନ୍ତକ ପ୍ରଚେଷ୍ଟା । ବହୁ ସୂତ୍ରରେ, ବିଭିନ୍ନ ମାଧ୍ୟମରେ ଓ ବିବିଧ ଉପାୟରେ ଶିକ୍ଷା ବିଶେଷତଃ ପ୍ରାଥମିକ ଶିକ୍ଷା ସ୍ତରରେ ଗୁଣାତ୍ମକ ବିକାଶ ସାଧନ ଏହାର ପ୍ରଧାନ ଲକ୍ଷ୍ୟ ।

ସେତେବେଳେ ଏହାର ଅଧ୍ୟକ୍ଷ ଥିଲେ ରାଜ୍ୟର ଲବ୍ଧପ୍ରତିଷ୍ଠ ଶିକ୍ଷାବିତ୍ ପ୍ରଫେସର ଶତ୍ରୁଘ୍ନ ନାଥ । ସେ ଥିଲେ ଏହାର ପ୍ରଥମ ନିର୍ମାତା । ତାଙ୍କ ଉଚ୍ଚକୋଟୀର ଜୀବନଦର୍ଶନ, ଗଭୀର ନିଷ୍ଠା ଓ ଅଦମ୍ୟ ଉଦ୍ୟମ ଫଳରେ ପ୍ରତିଷ୍ଠାନର ବିଭିନ୍ନ କାର୍ଯ୍ୟକ୍ରମ ରୂପାୟିତ ହେଉଥିଲା । ତତ୍କାଳୀନ ଉପାଧ୍ୟକ୍ଷ ଥିଲେ ରାଜ୍ୟର କୃତବିଦ୍ୟ ନାଟ୍ୟକାର ଶ୍ରୀଯୁକ୍ତ ପ୍ରାଣବନ୍ଧୁ କର । ତାଙ୍କର ଯୁବସୁଲଭ ଉତ୍ସାହ, ଉନ୍ମାଦନା ଓ ଆଧୁନିକ ଦୃଷ୍ଟିଭଙ୍ଗୀ ପ୍ରତିଷ୍ଠାନର କାର୍ଯ୍ୟକ୍ରମକୁ ସଫଳ ଓ ସାର୍ଥକ କରି ତୋଳିବାରେ ଖୁବ୍ ସହାୟକ ହେଉଥିଲା ।

ପ୍ରତିଷ୍ଠାନର କାର୍ଯ୍ୟକ୍ରମ ସେତେବେଳେ ଗବେଷଣା, ପ୍ରକାଶନ, ପ୍ରଶିକ୍ଷଣ ଓ ସଂପ୍ରସାରଣ—ଏହି ଚାରୋଟି ମାଧ୍ୟମରେ ସମ୍ପାଦିତ ହେଉଥିଲା । ଏହି ସଂକଳନ ପ୍ରସଙ୍ଗରେ ପ୍ରକାଶନ କାର୍ଯ୍ୟକ୍ରମ ହିଁ ଆମର ଆଲୋଚ୍ୟ । ପ୍ରତିଷ୍ଠାନ ତରଫରୁ ବିଭିନ୍ନ ପତ୍ରପତ୍ରିକା, ପୁସ୍ତକ ସଂକଳନ, ରିପୋର୍ଟ ଇତ୍ୟାଦି ପ୍ରକାଶ ପାଉଥିବା ସଙ୍ଗେ ସଙ୍ଗେ ଶିକ୍ଷା ସମ୍ପର୍କରେ ପ୍ରବନ୍ଧମାନ ଲେଖି ରାଜ୍ୟର ଅନ୍ୟାନ୍ୟ ପତ୍ରପତ୍ରିକାରେ ପ୍ରକାଶ କରିବାର ଉଦ୍ୟମ ହେଉଥିଲା । ଏଥିପାଇଁ ଅଧ୍ୟକ୍ଷଙ୍କଠାରୁ ଆରମ୍ଭ କରି ଅଧ୍ୟାପକମାନଙ୍କ ପର୍ଯ୍ୟନ୍ତ ସମସ୍ତେ ସଚେଷ୍ଟ ଥିଲେ ।

ଏହିସବୁ ପ୍ରଚେଷ୍ଟା ମଧ୍ୟରୁ ଗୋଟିଏ ହେଲା ଶିକ୍ଷକମାନଙ୍କ ଭୂମିକାକୁ କେନ୍ଦ୍ର କରି ଗଳ୍ପ ରଚନା କରିବା । ଏ ଦିଗରେ ପ୍ରଥମ ଦିଗ୍‌ଦର୍ଶକ ଥିଲେ ପ୍ରଫେସର ନାଥ । ସେ ନିଜେ କେତୋଟି ଗଳ୍ପ ଲେଖି, ଆମକୁ ପଢ଼ି

ଶୁଣାଉଥିଲେ । ସେତେବେଳେ ସେଠାରେ ଥିବା ଅଧ୍ୟାପିକା ରେଣୁକା ଦେବୀ ଓ ମୁଁ ମଧ୍ୟ କେତୋଟି ଗଳ୍ପ ଲେଖିଥିଲୁ । ସମାଜର ମଙ୍ଗଳ ନିମନ୍ତେ ଶିକ୍ଷକଙ୍କର ଭୂମିକାକୁ ଯଥାସମ୍ଭବ ମନୋରଞ୍ଜକ ଶୈଳୀରେ ରୂପାୟନ କରିବା ହେଲା ଏହିସବୁ ଗଳ୍ପର ମୌଳିକ ଲକ୍ଷ୍ୟ ।

ଏହାପରେ କେତେ ବର୍ଷ ବିତିଗଲା । ଅବସ୍ଥା କ୍ରମରେ କିଏ କେଉଁଠି ରହିଲେ ଏବଂ ଏହିପରି କିଏ କେତୋଟି ଗଳ୍ପ ଲେଖିଥିବେ । ତେବେ ମୋର ୩।୪ଟି ଗଳ୍ପ ଉପରେ, ନବଜୀବନ ପ୍ରଭୃତି ବିଭିନ୍ନ ପତ୍ରପତ୍ରିକାରେ ପ୍ରକାଶିତ ହୋଇଥିଲା । ତାପରେ ଲଣ୍ଡନରେ ମୋର ରହଣିକାଳ ମଧ୍ୟରେ ଶିକ୍ଷକ ଶିକ୍ଷୟିତ୍ରୀଙ୍କ ଜୀବନ ଓ କୃତିତ୍ୱକୁ କେନ୍ଦ୍ର କରି ପ୍ରସ୍ତୁତ କେତୋଟି ଫିଲ୍ମ ଟେଲିଭିଜନରେ ଦେଖିବାର ସୌଭାଗ୍ୟ ଲାଭ କରିଥିଲି । ସେଗୁଡ଼ିକ ମୋ ମନରେ ଗଭୀର ରେଖାପାତ କରିଥିଲା ଏବଂ ମୁଁ ଆଉ କେତୋଟି ଗଳ୍ପ ଲେଖିବାର ପ୍ରେରଣା ଲାଭ କରିଥିଲି । ଏହି ଶ୍ରେଣୀୟ ଗଳ୍ପଗୁଡ଼ିକର ଗୋଟିଏ ସଂକଳନ କରିବାକୁ ମୁଁ ସେଠାରେ ମନସ୍ଥ କରିଥିଲି ।

ସେଠାରୁ ଫେରି ମୁଁ ସମ୍ବାଦପତ୍ର ମାଧ୍ୟମରେ ତରୁଣ ଓ ପ୍ରବୀଣ ଗଳ୍ପକାରଗଣଙ୍କୁ ଏହି ଜାତୀୟ ଗଳ୍ପ ଉଦ୍ଦିଷ୍ଟ ସଂକଳନ ନିମନ୍ତେ ପଠାଇବାକୁ ଦୁଇ ତିନି ଥର ଅନୁରୋଧ କରିଥିଲି । କେତେକଙ୍କୁ ଏଥିପାଇଁ ବ୍ୟକ୍ତିଗତ ଭାବରେ ପତ୍ର ଲେଖିଥିଲି ଏବଂ ସାକ୍ଷାତ କରିଥିଲି । ତା' ଫଳରେ ଯେଉଁ କେତୋଟି ଗଳ୍ପ ମିଳିଲା, ସେଗୁଡ଼ିକ ମଧ୍ୟରୁ ଉପଯୁକ୍ତ ଲେଖାଗୁଡ଼ିକ ଏହି ସଂକଳନରେ ସ୍ଥାନ ଲାଭ କରିଛି ।

× × × ×

ଶିକ୍ଷକ, ତାଙ୍କ ସାଧନା ଓ ସିଦ୍ଧି, ତାଙ୍କ ସଂଗ୍ରାମ ଓ ସାଫଲ୍ୟ, ତାଙ୍କର ଜୟ ଓ ଗ୍ଳାନି ହେଉଛି ଏହିସବୁ ଗଳ୍ପର ଉପଜୀବ୍ୟ । ଶିକ୍ଷକ ସମାଜକୁ ନୂତନ ପ୍ରେରଣା ଦେବା ଏବଂ ବୃହତ୍ତର ସମାଜକୁ ସେମାନଙ୍କ କର୍ତ୍ତବ୍ୟ ବିଷୟରେ ସଚେତନ କରାଇବା ଏଗୁଡ଼ିକର ଲକ୍ଷ୍ୟ ।

ଏହି ବାଞ୍ଛିତ ଲକ୍ଷ୍ୟ ସାଧନରେ ପ୍ରବୀଣ ଓ ନବୀନ ଗଳ୍ପକାର-ମାନଙ୍କ ଅବଦାନ ଅବିସ୍ମରଣୀୟ । ସେମାନଙ୍କ ନିକଟରେ ମୁଁ ଗଭୀର କୃତଜ୍ଞତା ପ୍ରକାଶ କରୁଛି । ପୁସ୍ତକଟିର ଅଙ୍ଗସଜ୍ଜା ନିମନ୍ତେ ଶିଳ୍ପୀ

ଶ୍ରୀ ସୁନାମଣି ସାମଲ ଓ ପ୍ରଚ୍ଛଦପଟ ପାଇଁ କଳାକାର ଶ୍ରୀ ଉଦୟ ନାରାୟଣ ଜେନା ଧନ୍ୟବାଦାର୍ହ । ବିଳମ୍ବ ହେଲେ ମଧ୍ୟ ପ୍ରକାଶକ ଶ୍ରୀ ପୀତାମ୍ବର ମିଶ୍ର ପୁସ୍ତକଟିର ଆତ୍ମପ୍ରକାଶ କରାଇଥିବାରୁ ସାଧୁବାଦ ଜଣାଉଛି । ଏ ଦିଗରେ ଗୋସ୍ୱାମୀ ପ୍ରେସର ସ୍ୱତ୍ୱାଧିକାରୀ ଶ୍ରୀ ଦିବାକର ମିଶ୍ରଙ୍କର ଆନ୍ତରିକତା ବିଶେଷ ଉଲ୍ଲେଖଯୋଗ୍ୟ ।

ସର୍ବୋପରି ଓଡ଼ିଆ ସାହିତ୍ୟ କ୍ଷେତ୍ରରେ ଏହି ଧରଣର ସଂକଳନ ସର୍ବପ୍ରଥମ ହୋଇଥିବାରୁ କେତେକ ଅଭାବ ଓ ତ୍ରୁଟି ରହିବା ସ୍ୱାଭାବିକ, କିନ୍ତୁ ଲଘୁ ଅଥଚ ଶିକ୍ଷଣୀୟ ସାହିତ୍ୟ ଭାବରେ ଉଭୟ ଶିକ୍ଷକ ଓ ଛାତ୍ରସମାଜ ଦ୍ୱାରା ଏହା ଆଦୃତ ହୋଇ ପାରିଲେ ମୁଁ ଶ୍ରମ ସାର୍ଥକ ମଣିବି ।

ଏହି ପୁସ୍ତକଟିର ରୟାଲ୍‌ଟି ବାବତ ଅର୍ଥ ଶିକ୍ଷାର ବିକାଶ ଓ ଶିକ୍ଷକ ସମାଜର କଲ୍ୟାଣ ଦିଗରେ ବିନିଯୋଗ କରିବାକୁ ମୁଁ ସ୍ଥିର କରିଛି । ଆଶା, ସହୃଦୟ ଲେଖକଗଣ, ଶିକ୍ଷକଶିକ୍ଷୟିତ୍ରୀବୃନ୍ଦ ଓ ଶିକ୍ଷାପ୍ରେମୀ ଜନସାଧାରଣ ଏହି ସିଦ୍ଧାନ୍ତକୁ ଅନୁମୋଦନ କରିବେ ।

ବହୁ ଲବ୍‌ଧପ୍ରତିଷ୍ଠ ଗାଳ୍ପିକ ଓ ଶିକ୍ଷକବନ୍ଧୁଙ୍କର ମହାର୍ଘ ଅନୁଭୂତି ଓ ରଚନାରେ ସମୃଦ୍ଧ ଓ ପରିପୁଷ୍ଟ ଏହାର ପରବର୍ତ୍ତୀ ସଂସ୍କରଣ ପ୍ରକାଶ କରିବାର ବାସନା ରହିଲା ।

ପୁଣିଥରେ ଏହି ମହାନ୍ ଲକ୍ଷ୍ୟ ସାଧନରେ ସମସ୍ତଙ୍କର ହାର୍ଦ୍ଦିକ ସହଯୋଗ ଓ ଶୁଭେଚ୍ଛା କାମନା କରି ରହିଲି । ଇତି ।

ଭୁବନେଶ୍ୱର
ତା ୧ । ୮ । ୭୫

ବିନୀତ
**ସଂକଳକ**

# ସୂଚୀ

# ସେଇ ଚୋର ଦଅଁ ଦେବତା

ଅଧ୍ୟାପକ ଶତ୍ରୁଘ୍ନ ନାଥ

"ଏ କଅଣ ଭ୍ରମ ନା ମାୟା ?" ପଣ୍ଡିତେ ବୁଝିପାରୁନାହାନ୍ତି । ବୁଢ଼ା ହେଲେଣି ସତ । ବୟସ ତାଙ୍କର ଷାଠିଏ । ମୁଣ୍ଡ ଗୋଟିକ ଧଳା, କିନ୍ତୁ ଦାନ୍ତ ଗୋଟିଏ ବି ପଡ଼ିନାହିଁ । ଦିନକ ପାଇଁ ବି ତାଙ୍କର ଏ ଭ୍ରମ ହୋଇନାହିଁ । କାହିଁ କେଉଁ ଯୁଗର ଛୁଆ । ଆଜି ତା'ର ପିଲାଛୁଆ, ନାତି ନାତୁଣୀ ହେଲେଣି; କିନ୍ତୁ ପଣ୍ଡିତ ତାଙ୍କୁ ପାସୋରି ନାହାନ୍ତି । ଦେଖିବାମାତ୍ରେ ନାଁ ଗାଁ ସବୁ କଥା କହି ପକାନ୍ତି । କେତେ ଦୂରରୁ ଚିହ୍ନି ପକାନ୍ତି । କିଏ ଗଛରୁ ପଡ଼ି ଯାଇଥିଲା । କିଏ କଣ୍ଟାରେ କା'ର ଗୋଡ଼ ଫୁଟିଥିଲା । ନାଁଟା ମନେ ପଡ଼ିବା ମାତ୍ରେ ସେ ଘା'ର ଦାଗ ତାଙ୍କୁ ଦେଖାଯାଏ । ସନାର ଶୀତଦିନେ ଥରିବାର କାହୁଁ । ସନା ପୁଅକୁ ବି କାହୁଁ । ଏବେ ସନାର ନାତି । କୋଳ ଛୁଆଟାକୁ ଶୀତଦିନେ କାହୁଁ । ସନା ଆଜି ସନାତନ ଓ ଗାଁର ଥିଲାବାଲା ମଣିଷ । ସେ ଭୁଲିଲେଣି କିନ୍ତୁ ପଣ୍ଡିତଙ୍କର ଏଣ୍ଡି ତିନିପୁରୁଷୀ କଥା ମନେ ଅଛି । ତେବେ ତାଙ୍କର କଅଣ ଭ୍ରମ ହେଉଛି ?

ନା, ନା । ମାୟାଧର ମାୟାବୀ ପୁରୁଷ । ସେ କଅଣ ମାୟା କରୁଛନ୍ତି ? ଚକାଡୋଳା କଅଣ ପରୀକ୍ଷା କରୁଛନ୍ତି ? ଏଇ ବାଇଶି ପାବଛ ତଳେ ଜନ୍ମଜନ୍ମାନ୍ତର ଦୋଷୀ ଦର୍ଶନ ପାଉଛି । ପାପୀତାପୀ ଯମଦ୍ୱାରେ ଆଖି ବୁଜିଇ ଦେଖୁଛନ୍ତି । ସେଇ ଗାଁର ବୁଢ଼ାହାଡ଼ା ଦର୍ଶନ କରି ଫେରୁଛନ୍ତି । କୈବଲ୍ୟ ପାଉଛନ୍ତି । ତେବେ ପଣ୍ଡିତଙ୍କୁ ଏ ମାୟା କାହିଁକି ?

କେତେ ଦିନର ଆଶା ଅଜି ମେଣ୍ଟିଛି । କିନ୍ତୁ ସେ ଯେ ନିରାଶ ହେଉଛି । ସେ ଆଖି ଖୋଲି ଦେଖୁଛନ୍ତି । କାହିଁ ଚକାଡୋଳା ? କାହିଁ

ବଳିଆର ଭୂଜ ? ପଣ୍ଡିତେ ତ ଶ୍ରୀମନ୍ଦିରରେ । ସେ କାଳିଆ ବଳିଆଙ୍କ ପାଖରେ । ଏ କଥା ପଣ୍ଡିତେ ବୁଝୁନ୍ତି । କିନ୍ତୁ ଆଖି ଖୋଲି ଖୋଲିଲା-ବେଳକୁ କଳାଡୋଳା ନାହିଁ । ଚତୁର୍ଦ୍ଧାମୂର୍ତ୍ତି ନାହିଁ । ପତିତପାବନ ନାହାନ୍ତି ।



ବୁଢ଼ା ପଣ୍ଡିତ ମନ ଦେଉଛନ୍ତି । ଚିତ୍ତ ସ୍ଥିର କରୁଛନ୍ତି । ଭକ୍ତିରେ ଗଦ୍‌ଗଦ ହୋଇଛନ୍ତି । ଆଖି ତରବଟି ଖୁହଁଛନ୍ତି । ହାତଯୋଡ଼ି ଲୟ ଲଗାଉଛନ୍ତି । ଚକାଡୋଳାରେ ଶହ ଶହ କଳାଡୋଳା ସେ ଦେଖୁଛନ୍ତି । ଟେର ଆଖି ଡାକ୍ତରେ ଖୋସା ହୋଇଛି । ମେଞ୍ଚା ମେଞ୍ଚା ପେଁଛଡ଼ା ବୋହୁଛି । ନାକରୁ ଶିଙ୍ଘାଣି ଗଡ଼ୁଛି । ଗଙ୍ଗା ଯମୁନାର ଧାର ପରି ନାକର ଦୁଇ ପୁଡ଼ାରୁ ଖସୁଛି । କାହାର ବସ୍ତାନି କିଏ ନେଇଗଲାଣି । ପାଟି ଆଁ କରି ଭେଁ ଭେଁ ହୋଇ ସେ କାନ୍ଦୁଛି । ଗଳାନାଳୀ ପର୍ଯ୍ୟନ୍ତ ପଣ୍ଡିତଙ୍କୁ ଦେଖାଯାଉଛି । ଜିଭରେ ମଇଳା ଓ ଦାନ୍ତ ହଳଦିଆ । ପଶୁ କାନ । ବାଳ ଫରଫର ହୋଇ ଉଡ଼ୁଛି । ନାକର ବକଳା ଜମାଟ ହୋଇଛି । ମୁଣ୍ଡର ବେଣୀ ଓ ନାଲି ଫିତା ବନ୍ଧା ଯାଇଛି । ଗନ୍ଧ ପାଉଛି । ସୂର୍ଯ୍ୟ ମା କୋଳରୁ ଡେଇଁ ପଡ଼ିଲା ପରି ପିଲାଏ ଡେଇଁ ଡେଇଁ ମାଟିରେ କୁଦି ଆସୁଛନ୍ତି ଓ ପାଟି ଫିଟାଇ ଘର ଭିତରକୁ ମାଡ଼ି ଯାଉଛନ୍ତି । ପଣ୍ଡିତଙ୍କୁ ଘେରି ଯାଉଛନ୍ତି । ଗଛ ଚଢ଼ିଲା ପରି କାନ୍ଧ

ଉପରକୁ ଉଠି ଯାଉଛନ୍ତି । ଏ କ ଦୃଶ୍ୟ ! ଜଗନ୍ନାଥ କଅଣ ଉଭେଇ ଗଲେ ? ସେ କଅଣ ଶ୍ରୀମନ୍ଦିରରେ ନାହାନ୍ତି ? ତେବେ ଏ ବଡ଼ମୂଦା କାହିଁକ ?

ଏଥର ହେଲା ନାହିଁ । ବୁଢ଼ା ପଣ୍ଡିତେ ବାହୁଡ଼ିଲେ । ପୁଣି ଚେଷ୍ଟା କରିବେ । ମନ୍ଦିରର ବଡ଼ ସେବକ ତାଙ୍କର ବନ୍ଧୁ । ଥରେ କଅଣ ସତର ଥର ସେ ଆସି ପାରିବେ । ତାଙ୍କ ପାଇଁ ଦୁଆର ମେଲା । ଭିଡ଼ ତାଙ୍କୁ ବାଧୁନାହିଁ । ସେ ଆଖି ପୂରାଇ ଦେଖିବେ । ବହୁ ଦିନର ବାସନା ପୂରିବ । ଶ୍ରୀପାଦପଦ୍ମରେ ହାତ ଦେଇ ସେ ଶତଜନ୍ମର ପାପ ଧୋଇ ଦେବେ । ପୁଣି ସେ ଆସିଲେ । ଢଅଁଙ୍କ ପାଖକୁ ସେ ଗଲେ । ଠିକ୍ କରି ଏଥର ଚାହିଁଲେ । ମନ ଲଗାଇ ଦେଖିଲେ । ପୁଣି ସେଇ କଥା । ସେଇ ଅଡୁଆ । ସେଇ ତମାସା । ଲୁଖୁରା ମୁଣ୍ଡ ଓ ଝାମ୍ପୁରା ବାଳ । ଅଦନ୍ତା ଦାନ୍ତର ଖିଲିଖିଲି ହସ । ଗୁଲୁ ଗୁଲୁ କଥା । ବାଟୁଳି ବାଜୁନାହିଁ । ଉପାସ ପେଟରେ ହସର ତେଜ । ବିକାର ନାହିଁ । ବଡ଼ିମା ନାହିଁ । ଭେଦ ନାହିଁ । ପରାପର ନାହିଁ । ବର ଓହଳରେ ଦୋଳି ଖେଳ । ସେଠି ଭିଡ଼, ବେତ ବାଡ଼ ଛୁଟୁଛି । ପାଞ୍ଚଟା ଓହଳକୁ ଏକୋଇଶୀ ପିଲା । ଛୁଉଁନାହିଁ । କେତେ କଳି, କେତେ ବ ଆନନ୍ଦ । କେତେ କାନ୍ଦଣା, ଟମ୍ଭାଟମ୍ଭି, କେତେ ବ ହସଖେଳ, ଧରାଧରି ଓ କନ୍ଦାକନ୍ଦ । ପଣ୍ଡିତଙ୍କ କୋଳଖିଆ କୋଳି ଗଛ ଫଳିଲଣି । ସେଇଠି ସବୁ ଭିଡ଼ । ଫୋପଡ଼ା ମାଡ଼ରେ କୋଳି ଝଡ଼ି ପଡ଼େ ସତ, ଦେହରେ ମାଡ଼ ବସିଲା ପରି ପଣ୍ଡିତଙ୍କୁ ଲାଗେ । ଅଙ୍କୁଶୀ ଲଗା ବାଡ଼ିରେ ଡାଳ ଝୁଲାଇ ଦେଉଛନ୍ତି । ପିଲାଏ କୋଳି ଝୁଣ୍ଟାରେ ଲାଗିଛନ୍ତି । ପିଲାଙ୍କ ପକେଟ ଭର୍ତ୍ତି । ଅଣ୍ଟି ପୂରିଛି । ଅନେକଙ୍କ ପେଟ ତଣ୍ଟି ଯାଏଁ ଭର୍ତ୍ତି ହୋଇଛି । ପଣ୍ଡିତଙ୍କ ମନ ଆନନ୍ଦରେ ପୂରିଛି ।

ଆଙ୍କୁଶୀ କୋଳି-କଣ୍ଟାରେ ଲାଗିଛି । ପଣ୍ଡିତଙ୍କ ହାତ ବାଡ଼ିରୁ ଛାଡ଼ୁ ନାହିଁ । ଆଖି ସେ ଆଡ଼େ ପଡ଼ିଛି । ମୁଣ୍ଡ ଝୁଇଁ ମଉଳିଛି । ମାଟି ଫାଟିଲଣି । ଚେଣ୍ଡୁ ମୁଣ୍ଡ ପୋତିଛି । ହାତ ପାତିଛି ପଣ୍ଡିତଙ୍କ ଆଡ଼କୁ । ତା'ର ବିକଳ ସହ୍ୟ ହେଉନାହିଁ । ସେ ଡାକୁଛି । ······ଣ୍ଡିତଙ୍କ ଆଖି

ଛଳ ଛଳ ହେଲା । ଆଉ ହେବ ନାହିଁ । ଜଗନ୍ନାଥ ଦେଖା ଦେବେ ନାହିଁ । ଏଥର ବ ଆସିବା ଭଣ୍ଡ ର ହେଲା । ପଣ୍ଡିତଙ୍କ ଆଶା ପଣ୍ଡ ହେଲା । ମନ ମରିଗଲା, ହୃଦ ଦବିଗଲା । ବାର ବର୍ଷର ତପସ୍ୟା ଜଳିଗଲା ପରି ଲାଗୁଛି । କାହାକୁ କହିବେ ? ସେ ଯେ ପଣ୍ଡିତେ । ସେ ମୂକକୁ ବାଚାଳ କରନ୍ତି । ଆଖିରେ ଜ୍ଞାନାଞ୍ଜନ ଲଗାଇ ଦିଅନ୍ତି । ମଣିଷ ତିଆରି ତାଙ୍କ କାମ । ତେବେ କରୁଣା ଊଣା କାହିଁକି ? ଏ ବାଛ ବିଚ୍ଛୁର କାହିଁକି ?



ସଞ୍ଜ ହେଲା, ଆଜନ୍ତ ଦେଖିବାର କଥା । ସମସ୍ତେ ସଜ ଓ ସମସ୍ତ ସଜିଲେ । କିନ୍ତୁ ପଣ୍ଡିତେ ନୁହନ୍ତି । ତାଙ୍କ ମନ ଦବି ଦବି ଯାଉଛି । ଅନନ୍ତକୁ ଖୋଜି ଖୋଜି ସେ ଅନ୍ତ ପାଉନାହାନ୍ତି । ଦେହରେ ଉତ୍ତାପ । ଦେହ ପୋଡ଼ି ଯାଉଛି । ମନପୋଡ଼ା ସାଙ୍ଗକୁ ଦେହ ପୋଡ଼ା । ସେ ବିଛଣାରେ ତଳି ପଡ଼ିଲେ । ଗୁଇନଦ ଲାଗିଗଲା । ଆଜନ୍ତର ଘଡ଼ଘଣ୍ଟା ନାହିଁ । ଶୁଭୁଛି ତାଙ୍କ ନିତିଦିନର ସ୍କୁଲ୍ ଘଣ୍ଟା । ସେ ସ୍କୁଲ ଛନ୍ତି ସ୍କୁଲରେ ବର୍ଷ ତଳକୁ । ତାଙ୍କୁ ମୋଟେ କୋଡ଼ିଏ ବର୍ଷ । ଗଜା ପିଲା । ନିଶଦାଢ଼ି ଉଠିନାହିଁ । ସେ କଅଣ ମାଷ୍ଟ୍ର ହେବେ ? ପିଲା କଅଣ ମାନିବେ ? ବେତ କାହିଁ ? ଅବଧାନ କଅଣ ଏମିତି ସେମିତି ! ପାଠପଢ଼ା ଖଇଷ୍ଟି ହେବ । ଚତୁଷ୍ପାଠୀ କାଠ ପରି ନିଶଉଠା ପାଠ ଅସମ୍ଭବ । ଗଜା ମାଷ୍ଟ୍ରଙ୍କ ପାଠ ବ ସେଇଆ । ଦାମ ଅବଧାନେ ଏ ଧକା ପାଇଲେ । ନା ନା, ଛି ଛି, ସେ ସମ୍ଭାଳିଲେ । ହଉ, ଦି’ଦିନ ଦିନେ ଦେଖାଯାଉ । ହାତରେ ଦି’ଗଛ ଆଖ୍ । ସେ ତାଟି ଫିଟାଇ ଷ୍ଟେଶାଳୀରେ ପଶିଲେ, ପାଞ୍ଚୋଟି ପିଲା, ଦି’ଖଣ୍ଡି ଛିଣ୍ଡା ପାଲ, ଖଣ୍ଡେ ଭଙ୍ଗା ପଟା—ଏଇ ସମ୍ବଳ । ଏଠି

ଫେର ରସ ବଦ୍ଧ ପଡ଼ିଲ । "ତମେ ଆମ ପାଇଁ କାଲ ଆଣିବ । କାଲ ରସୁଆଳ ଆସୁ । ନିଷ୍ଟସ୍ୱ ଆସିବ ।" ପଚରା ଉତର ନାହିଁ । ଚନ୍ଦ୍ରା ପରିଚୟ ନାହିଁ । କାଲ ପାଇଁ ନିମନ୍ତ୍ରଣ, ଏଥିରେ ଅବଧାନ ହେବାର ଇଚ୍ଛା ରସେଇ ଗଲ । ମାଟି ବାଗେଇଲ । ମଞ୍ଜିରୁ ଗଜା ହେଲ । ପିଲଙ୍କ ମେଳରେ ମନ ମାନିଲ । ଆଖୁବଅ ଅବଧାନଙ୍କ ପାଖକୁ ପିଲେ ଧାଇଁଲେ । ଭୂଅସୁଣୀଙ୍କ ଠେଲରେ ପିଲ ଉଠୁ ନ ଥିଲେ । ନିଦ ଭାଙ୍ଗୁ ନ ଥିଲ । ଅଳସ ଘୁଞ୍ଚୁ ନ ଥିଲ । ଆଜ ମନକୁ ମନ ସଜ । ଶେଯ ଭଲ ଲାଗୁ ନାହିଁ । ଏ କାହାର କୁହୁକ ?

ଦିନ ଗଡ଼ୁଛି । ଗ୍ଭଳିଶ ବର୍ଷ ଗ୍ଭଲିଯାଇଛି । କେତେ କଅଣ ବଦଳିଛି । କେତେ ସନା ଗାଁର ସନାତନ ହୋଇଛନ୍ତି । କେତେ ଘନିଆ ଆଜ ଘନଶ୍ୟାମ । କେତେ ତକରା ପଣ୍ଡିତଙ୍କ ହାତଗଡ଼ା ଚକ୍ରଧର । କେତେ ହେଁସମୁଣ୍ଡିଆ ଆଜ ଖିରଜନନୀ । ଆଜ ପଣ୍ଡିତଙ୍କୁ ତାଡ଼ନା ନାହିଁ । ନାହିଁ ଡାକରା, ଭଡ଼ା ଓଟର । ପିଲଙ୍କ ଘେରଭିତରେ ସେ ବନ୍ଦୀ । ପଣ୍ଡିତଙ୍କୁ ବେଶ୍ ନିଦ ହୋଇଛି । ଥକା ମନ ଚକା ନୟନ ଦେଖୁଛି । ଶୁଣୁଛି "ଏଇ ମାଟି ସେଇ ଛାଟି ।" "ସେଇ ତୋର ବଅଁ ଦେବତା । ସେଠି ଶ୍ରୀମନ୍ଦିର । ସେଠି ଶ୍ରୀକ୍ଷେତ୍ର । ସେଠି ବଜେ ଶିଶୁନାରାୟଣ ।"

# କ୍ଷମାପ୍ରାର୍ଥନା

### ଅଧ୍ୟାପକ ରାଜକିଶୋର ରାୟ

ହେଇଟି ଦେଖ ଶ୍ରୀମତୀ ! ସିନ୍ଦୂରା ଫାଟି ଆସୁଛି । ତୁମେ ଏତେବେଳଯାଏ ଶୋଇ ରହିଛ ? ସବୁଦିନ ଏମିତି ନିଦୋଡ଼ ନିଦରେ ଶୋଇଲେ, ମୁଁ କେବେ କିଛି କହେନାହିଁ; ଆଜି ପରା ଦିନ ଗୋଟାକରେ ଗୋଟାଏ । ଆଜି ଉଠିପଡ଼ । ହଁ, କାଲିଠୁଁ ଯେଉଁ ନୂଆ ଆସନ ଖଣ୍ଡି କିଣି ଆଣିଥିଲି, ସେଇଟି କୁଆଡ଼େ ଗଲା ? ପୁଣି ମୁହଁ ବୁଲେଇ ଶୋଇଲ ? ଆଉ ହବନାଇ ।

ପଣ୍ଡିତ ଚନ୍ଦ୍ରକାନ୍ତ ମହାପାତ୍ର ପୁରୁଣାକାଳିଆ ସାଧାସିଧା ଲୋକ । ସଂସ୍କୃତ ସାହିତ୍ୟରେ ତାଙ୍କର ପାଣ୍ଡିତ୍ୟ ଅଗାଧ । କାଦମ୍ବରୀ, ମେଘଦୂତ, ଉତ୍ତର ରାମଚରିତ ଇତ୍ୟାଦି ଗ୍ରନ୍ଥରୁ ବହୁ ଶ୍ଲୋକ ତାଙ୍କର ଅଧିଗତ ଅଛି; ମାତ୍ର ଭାଗ୍ୟର ବିଡ଼ମ୍ବନା ଯୋଗୁ ସେ ସବୁର ଚର୍ଚ୍ଚା ଦୂରେ ଥାଉ, ଗୋଟିଏ ପ୍ରପୋଜ୍‌ଡ ପ୍ରାଇଭେଟ୍ ହାଇସ୍କୁଲର ସଂସ୍କୃତ ପଣ୍ଡିତ ଭାବରେ ସେ ନିଯୁକ୍ତ ରହି ସିନେମାଦର୍ଶନ-ସୁଖଭୋଗୀ, ସିଗ୍ରେଟ ଅଧରଧାରୀ ଅଜାତଶ୍ମଶ୍ରୁ ନାବାଳକ ଛାତ୍ରନାମଧାରୀ ଗୁଡ଼ାଏ ବାଳକଙ୍କୁ ବିଦ୍ୟାଭ୍ୟାସ କରାଉଛନ୍ତି ।

ତାଙ୍କର ପତ୍ନୀ ଶ୍ରୀମତୀ ଆଜି ଦିବସଟିର ତାତ୍ପର୍ଯ୍ୟ ନ ବୁଝି ସ୍ୱାମୀଙ୍କର ହଜାର କିସମର ଖିଆଲ ଭିତରୁ ଏ ଗୋଟାଏ ଖିଆଲ ଭାବି ଡାହା ଚିତ୍ ହୋଇ ଶୋଇ ରହିଥିଲେ, ପୁଣି ଚିତ୍ ଅବସ୍ଥାରୁ ମୁହଁମାଡ଼ି ଶୋଇ ରହିଲେ ।

ଝୁଲୁଝୁଲିଆ ବାଆ ବୋହୁଥିଲା । ପ୍ରଭାତ ତାରା ଶୋଭୁଥିଲା ଦିଗ୍‌ବଳୟରେ । ଦିନ ତ ଦିନ ! କଅଣ ବା ପାର୍ଥକ୍ୟ ଅଛି ? ବଡ଼-ଲୋକଙ୍କର ଯେ ସିନା ବିଳାସ ? ଆଜି ଜୟନ୍ତୀ, କାଲି ଷଷ୍ଠୀପୂର୍ତ୍ତି

ଉତ୍ସବ, ପରଦିନ ଲୋକପ୍ରତିନିଧି ହେବାର ଦ୍ୱିବାର୍ଷିକ ଉତ୍ସବ, ଅବା ନବପରିଣୀତା ତନ୍ୱୀର ମନ ରଖିବା ପାଇଁ ପ୍ରତି ସପ୍ତାହର ଶୁକ୍ରବାରରେ ବିବାହ ଉତ୍ସବ ପାଳନ ଇତ୍ୟାଦି ।

ଏ ବିଳାସ, ଏ ସ୍ୱପ୍ନ, ଗରିବ ବ୍ରାହ୍ମଣ ପଣ୍ଡିତର ଶୁଖିଲା ମାଡ଼ ଭିତରେ କେବେ କଅଣ ପ୍ରାଣ ସଞ୍ଚାର କରିବ ? ଅଥଚ ପଣ୍ଡିତ ଚନ୍ଦ୍ରକାନ୍ତ ମହାପାତ୍ର ଆଜି ପ୍ରଭାତ ସ୍ନାନ ସାରି ନିର୍ମଳ ଖଣ୍ଡିଏ ପାଟପଟନି ପିନ୍ଧି ପୂର୍ବଦିଗରୁ ଉଜଳ ଉଠି ଆସୁଥିବା ସୂର୍ଯ୍ୟରଥକୁ ନମସ୍କାର କରୁଛନ୍ତି ।

ସୁଶାନ୍ତ ନଭୋମଣ୍ଡଳ । ସହସ୍ର କ୍ଷୀର ସଦୃଶ କେତେ ଶ୍ୱେତପୀତ ରବିରଶ୍ମି ଆକାଶକୁ ବନ୍ଧ କରୁଛି । ଏଣେ ସୁଷୁପ୍ତା ଧରଣୀ କ୍ରମେ ଜାଗରିତ । ତାଙ୍କର ମନେପଡ଼ିଲା ଏକଲବ୍ୟ, ଆରୁଣି, ନଚିକେତା— ସେଇ ପ୍ରାଚୀନ ଭାରତର ଅତୀତ ଗୁରୁକୁଳାଶ୍ରମର ସେଇ ସାର୍ଥକ ବନସ୍ଥୀ ଜ୍ଞାନପିପାସୀ ଶିଷ୍ୟଙ୍କର କଥା ।

ସେମାନେ ଆସୁଥିଲେ ଆହୃତ ଅଞ୍ଜଳିରେ ଗୁରୁପାଦରେ ଅର୍ପଣ କରିବା ପାଇଁ ପୁଷ୍ପମାଳ୍ୟ, ସେମାନେ ଆଣୁଥିଲେ ସମିଧ, ଗୁରୁ ଓ ଗୁରୁ-ପତ୍ନୀଙ୍କର ଉଚ୍ଛିଷ୍ଟ ଆହାର କରି ପଦ୍ମାସନରେ ବସି ଶିକ୍ଷା ଗ୍ରହଣ କରୁଥିଲେ । ଆଜି ସେ ସଂସ୍କାର ଅଛି କି ନାହିଁ, କିଏ ଜାଣେ ?

ଚନ୍ଦ୍ରକାନ୍ତ ଘରଆଡ଼କୁ ଅନାଇଁ କଅଣ ଖୋଜିଲେ । କଅଣ ଦାନ କରି ସେ ଗୁରୁଭକ୍ତର ସ୍ପୃହ ଆପ୍ୟାୟନ କରିବେ । ହଁ, ସବୁ ପଦାର୍ଥ ପାଖରେ ଅଛି । ବିଲ୍ୱପତ୍ର, ଚନ୍ଦନ, ସବୁ ସଜାଡ଼ି ରଖିଛନ୍ତି ଚନ୍ଦ୍ରକାନ୍ତ । ସେମାନେ ଗୋଟି ଗୋଟି ହୋଇ ନମସ୍କାର କରିବେ, ଆଉ ଚନ୍ଦ୍ରକାନ୍ତ ସେମାନଙ୍କୁ ଆଶୀର୍ବାଦ କରିବେ । କହିବେ, "ତମେମାନେ ଜ୍ଞାନାଲୋକରେ ଆଲୋକିତ ହୁଅ । ପ୍ରାଚୀନ ଭାରତୀୟ ସଂସ୍କୃତିର ଦାୟାଦ ହୁଅ । ତୁମର ଏଇ ଗୁରୁଭକ୍ତି ପ୍ରଦର୍ଶନ ପାଇଁ ଭଗବାନ ତୁମକୁ କଲ୍ୟାଣ କରନ୍ତୁ ।"

ଚନ୍ଦ୍ରକାନ୍ତ ଚମକି ପଡ଼ିଲେ । ସେ କଅଣ ସବୁ ଭାବୁଛନ୍ତି ? ଶ୍ରୀମତୀ ତଳ ଝଞ୍ଜାରୁ ପାଟିକଲେ, "ହଇହେ, ଘରେ ପରିବାପତ୍ର ନାହିଁ,

ଚୋଇଲ ଯାଅ, ତୁଅକୁ କାଲିଠାରୁ ଜ୍ୱର ଧରିଛି, ଡାକ୍ତର ପାଖକୁ ଯାଅ । ଆଜି ତ ସ୍କୁଲ ଛୁଟି, ଗାଧୋଇ ପାଧୋଇ କଅଣ ନୂଆ ଆସନରେ ପେଢ଼ ମଠା ଖଣ୍ଡିକ ପିନ୍ଧି ବସିଗଲଣି ମେଘଦୂତ ପଢ଼ିବା ପାଇଁ ? ମୋ ଘରପଟେ ଯମଦୂତ, ବୁଝିଲ ? ତମ ମେଘଦୂତ ସେତିକି ଥାଉ ।"

ଶ୍ରୀମତୀଙ୍କର ଏ ଅଷ୍ଟପ୍ରହରୀ ତର୍ଜନ ଗର୍ଜନକୁ ଚନ୍ଦ୍ରକାନ୍ତ କାନ ଦିଅନ୍ତି ନାହିଁ, ଆଜି ବି ଦେଲେ ନାହିଁ । କବାଟ ଖଡ଼କନା ହେଲା । କିଏ ଆସିଲେ କି ? ଟେନ୍‌ଥ କ୍ଲାସ ପିଲାଏ ଆସିବେ ଆଗ, ନା ତଳ ଶ୍ରେଣୀର ପିଲାଏ; ଶ୍ରେଷ୍ଠ ପିଲାଗୁଡ଼ାକ କଅଣ ଆଜି ଦିବସର ତତ୍ତ୍ୱ ବୁଝିଥିବେ ? ବୋଧହୁଏ ବଡ଼ଗୁଡ଼ାକ ଆଗ ଆସିବେ । ଚନ୍ଦ୍ରକାନ୍ତ ବିସ୍ଫାରିତ ନୟନରେ ଦ୍ୱାରବନ୍ଧକୁ ଚାହିଁ ରହିଲେ ।

କବାଟ ଖୋଲି ଯିଏ ଆସିଲେ, ସିଏ ତଳ ଶ୍ରେଣୀର ଛାତ୍ର ନୁହନ୍ତି କି ଟେନ୍‌ଥ କ୍ଲାସର ଶିଷ୍ୟ ନୁହନ୍ତି । ସେ ପ୍ରପୋଜ୍‌ଡ ହାଇସ୍କୁଲର ପିଅନ୍ ଚପରାସୀ । ତା ହାତରେ ଖଣ୍ଡେ କାଗଜ ଝୁଲୁଥିଲା । ପଣ୍ଡିତେ ପିଅନ୍‌କୁ ସମ୍ବୋଧନ କରି କହିଲେ, "କିଓ ପିଅନ୍, ଆଜି ଦିବସରେ ତୁମେ କି ଆଦ୍ୟ ଅବତାର, ଖବର କଅଣ ?"

ପିଅନ୍ କାଗଜ ଖଣ୍ଡିକ ପଣ୍ଡିତଙ୍କ ହାତକୁ ବଢ଼ାଇ ଦେଇ କହିଲା, "ଖବର ଭଲ ନୁହେଁ ।"

ପ୍ରପୋଜ୍‌ଡ ହାଇସ୍କୁଲର ହେଡମାଷ୍ଟର ଲେଖିଛନ୍ତି, "ପଣ୍ଡିତ ମହାଶୟ, ଗତକାଲି ଆପଣ ଟେନ୍‌ଥ କ୍ଲାସର ଜଣେ ଛାତ୍ରକୁ ସେ ଯଥାଚିତ ବିଦ୍ୟାଭ୍ୟାସ କରୁନାହିଁ ବୋଲି ଯେଉଁ ଶାସ୍ତି ଦେଇଥିଲେ; ଅର୍ଥାତ୍ ତାର କର୍ଣ୍ଣମୂଳକୁ ମଳି ଦେଇଥିଲେ, ସେ ଛାତ୍ର ଆପଣଙ୍କର ଏବଂବିଧ ଅତ୍ୟାଚାର ବିରୁଦ୍ଧରେ ଅଭିଯୋଗ ଉପସ୍ଥାପିତ କରି ଟେନ୍‌ଥ କ୍ଲାସର ସମସ୍ତ ଛାତ୍ରଙ୍କୁ ଏକତ୍ର କରି ବର୍ତ୍ତମାନ ସ୍କୁଲ ପଡ଼ିଆରେ ଛିଡ଼ା କରାଇଛି । ତାର ଦାବି—ଅଚିରେ ତୁରନ୍ତ ଏ ପତ୍ର ପାଇ ଆସି ସେମାନଙ୍କ ଆଗରେ ଦୋଷ ସ୍ୱୀକାର କରି କ୍ଷମା ନ ମାଗିଲେ ଏ ସ୍କୁଲରେ ଷ୍ଟ୍ରାଇକ୍ ହୋଇଯିବ । ଅତଏବ ଆପଣ ପତ୍ର ପାଠକରି ଶୀଘ୍ର ଆସନ୍ତୁ

ଓ କ୍ଷମା ମାଗନ୍ତୁ । ତାହାହେଲେ ଆପଣଙ୍କର, ମୋର ଓ ଅନ୍ୟାନ୍ୟ ଶିକ୍ଷକଙ୍କର ଚାକିରି ରହିବ, ନଚେତ୍ ସେ ଯାହାର ଗଣ୍ଠିରି ପୁଟୁଳି ବାନ୍ଧି ଚାଲିଯିବାକୁ ହେବ । ମନେରଖିବେ ଏ' ପ୍ରପୋଜ୍‌ଡ ହାଇସ୍କୁଲ । ତୁରନ୍ତ ଆସିବେ ।

ସଂସ୍କୃତ ପଣ୍ଡିତ ଚନ୍ଦ୍ରକାନ୍ତ ମହାପାତ୍ର ନିଜ ପରିଧେୟ ମଠା ପାଟକୁ ଚାହିଁଲେ; ନୂଆ କରି ଆଣିଥିବା ଆସନକୁ ବି ଚାହିଁଲେ, ଯେଉଁ ଆସନରେ ବସି ତାଙ୍କର ପୂର୍ବତନ ଛାତ୍ରମାନଙ୍କୁ ଆଜି ଦିବସଟିରେ ସେ ଆଶୀର୍ବାଦ କରିଥାନ୍ତେ ।

ଶ୍ରୀମତୀଙ୍କର ସ୍ୱର କ୍ରମେ ଚଢ଼ା ହେଲାଣି । ସେ ପାଟିକଲେ ଭିତର ଅଗଣାରୁ—''କଅଣ ଡାକ୍ତରଖାନାକୁ ବାହାରିଲ ନା ନାହିଁ ? ହଇଏ, ସେ ପବନା କାହିଁକି ଆସିଥିଲା ? ଭଲରେ ମନ୍ଦରେ କହିଲେ ଦି'ଟା ବୋଲ୍‌ହାକ କରିଦେବ ନାହିଁ, ସେ କଅଁ ଆସିଥିଲା ?''

ଶ୍ରୀମତୀ କିଛି ଉତ୍ତର ସ୍ୱାମୀଙ୍କଠାରୁ ନ ପାଇବାରୁ ଆସି ଦେଖିଲେ ସ୍ୱାମୀ ବିମୂଢ଼ଭାବରେ ନୂଆ ଆସନ ଉପରେ ବସି ରହିଛନ୍ତି । ତାଙ୍କ ଦୁଇପାଖେ ବେଲପତ୍ର, ଅରୁଆ ଚାଉଳ ଓ ଘୋରା ଚନ୍ଦନପାତ୍ର ।

ଶ୍ରୀମତୀ ଅବାକ୍ ହେଲେ । ଏ ସବୁ କଅଣ ବୋଲି ସେ ପଚାରିଲେ । ଚନ୍ଦ୍ରକାନ୍ତ ଧୀରେ ବୁଝାଇ କହିଲେ, ''ଆଜି ଗୁରୁଦିବସ, ମୁଁ ଭାବିଥିଲି ମତେ ଆଜି ସମ୍ମାନ ଓ ଭକ୍ତି ଦେଖାଇବା ପାଇଁ ପିଲାଏ ଆସିବେ । ସେମାନଙ୍କ କପାଳରେ ଚନ୍ଦନ ବିନ୍ଦୁଏ ଦେଇ ଓ ବେଲପତ୍ର ଗୋଟିଏ ଗୋଟିଏ ତାଙ୍କ କରକୁ ବଢ଼ାଇଦେଇ ମୁଁ ଆଶୀର୍ବାଦ କରିବି । ତେବେ ବ୍ରାହ୍ମଣର ଆଉ ବା କଅଣ ଅଛି ?

ମାତ୍ର ଚଳିକ ପଡ଼ିଲା ଶ୍ରୀମତୀ ! ଏବେ ଯାଉଛି, ଯାହାଙ୍କଠୁଁ ସମ୍ମାନ ପାଇବି ବୋଲି ମଠା ମୁକୁଟ ପିନ୍ଧି ଶୁଦ୍ଧପୂତ ହୋଇ ବସି ରହିଥିଲି, ସେଇ ଛାତ୍ରମାନେ ଏବେ ସ୍କୁଲରେ ମୋର ଅପରାଧ ଯୋଗୁଁ ଷ୍ଟ୍ରାଇକ୍ କରିବାକୁ ତିଆରି । ମୋର ଅପରାଧ—ଭଲ ପଢ଼ୁନାହିଁ ବୋଲି

ଜଣେ ଛାତ୍ରର କାନକୁ ମୁଁ ମୋଡ଼ ଦେଇଥିଲି । ସେଇଟା କଅଣ ସତରେ ଦଣ୍ଡ ଥିଲା ? ସେଥିରେ ସ୍ନେହଭାବ ନ ଥିଲା ? କେହି ବୁଝିଲେ ନାହିଁ ଶ୍ରୀମନ୍ତ । ଟିକଏ ଆକଟ । ଏଇଆ ତ ? ଫଳ ବିପରୀତ ହେଲା । ଏବେ ଯାଉଛି ସେ ପିଲାକୁ ମୁଁ କ୍ଷମାପ୍ରାର୍ଥନା କରିବି । ନ ହେଲେ ହେଡମାଷ୍ଟର ଚିଠିରେ ଲେଖିବା ଭଳି ଆମ ଧନଜୀବନ ଆଉ ଆମର ହୋଇ ରହିବ ନାହିଁ ।”

ଶ୍ରୀମନ୍ତ ସବୁ ଶୁଣି ଝିଙ୍କାରି ଉଠିଲେ; କହିଲେ, “ତମେ କଥାଁ କାହା ବିଷୟରେ ହାତ ଦେଉଛ ? ସେଗୁଡ଼ାକ କଥାଁକୁ ଗଲେ କେତେ, ଗାତକୁ ଗଲେ କେତେ ? ତୁମେ ତ ଏତେ ଛାତ୍ରଙ୍କୁ ପଢ଼େଇ ମଣିଷ କଲ ; ତୁମଠାରୁ ପାଠ ପଢ଼ି କିଏ କେତେ ଡେପୋଟି, କିଏ ସିଭିଲ୍ ସପ୍ଲାଇ ଅଫିସର, କିଏ ପୋଲିସ ସାହେବ, କିଏ କେତେ କଅଣ ହେଲେଣି । ଆଚ୍ଛା, ଆଜି ତ କହୁଛ ଗୁରୁଦିବସ । ଗଲି ଡାକ୍ତରଖାନାକୁ । ଧାଡ଼ିର ପଛରେ ଛିଡ଼ା ହୋଇ କହି ପାରିବି ମୁଁ ଗୁରୁ, ହେ ଡାକ୍ତର, ତମେ ମୋର ଛାତ୍ର ଥିଲ, ମୋ ପିଲାର ଖୁବ୍ ନସମ ହୋଇଛି, ଆଗ ମତେ ଔଷଧ ଦେଇ ବିଦାୟ କର । ଭଗବାନ ତମର ମଙ୍ଗଳ କରିବେ । ନା ହେ ନା, ଯେତେ ଗୁରୁ ଗୁରୁ ବୋଲି ପାଟି କଲେ ବି ସବୁ ଉପହାସ । ସେ ସବୁ ଚଳିବ ନାହିଁ । ପଛରେ ଆସିଛ, ପଛରେ ଯାଅ । ଆଚ୍ଛା, ଗଲି ସିଭିଲ୍ ସପ୍ଲାଇ ଅଫିସର ପାଖକୁ । କହ, ତୁମର ଜରୁରି ଦରକାର । ପିଣ୍ଡାଟା ଫାଟି ଆଁ କରିଛି । ଗୋଟିଏ ସିମେଣ୍ଟ ବସ୍ତା ଦରକାର । ଆଜି ଗୁରୁଦିବସ । ତମେ ତ ମୋ ଛାତ୍ର । ମୋ କଥା ଆଗ ବିଚାର କର । ନା, ତା ହେବ ନାହିଁ । ଗଲି ମଟରଷ୍ଟାଣ୍ଡକୁ । ତମେ ଗୁରୁ ବୋଲି କଅଣ ତମ ଛାତ୍ର କଣ୍ଡକ୍ଟର ଆଗ ଟିକେଟ ବଢ଼େଇ ଦେବ ? ଏ ସବୁ ଫାର୍ସ, ତମେ ଏଡ଼ିକ ନିର୍ଲଜ୍ଜ ବୋଲି ସିନ୍ଦୂର ଫାଟୁ ଫାଟୁ ମତେ ବିଛଣାରୁ ଉଠେଇ ଏଇସବୁ କାମ କରେଇ ନେବାକୁ ବସିଥିଲ ? ହଉ, ଟିକଏ କ୍ଷମାପ୍ରାର୍ଥନା କରିଆସ ଛାତ୍ର ପାଖରେ ।”

ନାରୀ ବୁଦ୍ଧି ଓ ବଚନିକାକୁ ସଂସ୍କୃତ ପଣ୍ଡିତେ ତାରିଫ୍ କଲେ । ମାତ୍ର ମନ ବୁଝିଲା ନାହିଁ । ଏଇ ଛାତ୍ରଙ୍କ ଭିତରେ କଅଣ ଜଣେ ହେଲେ

ଏକଲବ୍ୟ ନାହାଁ ? ଜଣେ ଆରୁଣି ନାହାଁ ? ହୁଏତ ଥିବେ । ଚନ୍ଦ୍ରକାନ୍ତ ଦୀର୍ଘ ନିଃଶ୍ୱାସ ପକାଇଲେ ।

ଡାକ୍ତରଖାନାରେ ଚନ୍ଦ୍ରକାନ୍ତ ପହଞ୍ଚି ଦେଖିଲେ ମହା ଭିଡ଼ । କେଜାଣି କାହିଁକି ତାଙ୍କ ମୁହଁରୁ ବାହାରି ପଡ଼ିଲା, "ଆହେ ବାନାମ୍ବର, ପୁଅର ସର୍ଦ୍ଦି ହୋଇଛି । ଔଷଧ ଶୀଘ୍ର ଦେଲେ ଜଞ୍ଜାଳୀ ଲୋକ ଚାଲିଯିବ ।"

ବାନାମ୍ବର ପଣ୍ଡିତଙ୍କର ପ୍ରାକ୍ତନ ଛାତ୍ର । ବାନାମ୍ବର ଚିହ୍ନିଲେ । ମାତ୍ର ତାଙ୍କ ମୁହଁରେ ଟିକିଏ ବ୍ୟଗ୍ରତା ବି ଦେଖାଗଲା ନାହିଁ । ନମସ୍କାର କରିବା ଦୂରରେ ଥାଉ, ଡାକ୍ତର କହିଲେ, "ଆପଣଙ୍କର ନମ୍ବର ୪୩; ନମ୍ବର ଆସିଲେ ଔଷଧ ପାଇବେ ।"

ପଣ୍ଡିତ ବୁଝିଲେ ଏ ଦେଶରେ ବାସ୍ତବରେ ଗଣତନ୍ତ୍ର ଚାଲିଛି । ଗୁରୁ ବୋଲି ବା ଅଜି ଗୁରୁଦିବସ ବୋଲି ଗଣତନ୍ତ୍ର ତ ଆଉ ଗୁରୁତନ୍ତ୍ରରେ ପରିଣତ ହେବନି ? ତେଣୁ 'ଶୁଭମସ୍ତୁ' 'ଶୁଭମସ୍ତୁ' କହି ପଣ୍ଡିତେ ପଛକୁ ହଟିଲେ । (ଶ୍ରୀମତୀ ଠିକ୍ କହୁଥିଲା, ଏ ଏକ ପ୍ରହସନ ଏବଂ ସେ ପ୍ରହସନରେ ସେ ନିଜେ ଜଣେ ପ୍ରଧାନ ନଟ ।) ୪୩ ନମ୍ବର ପର୍ଯ୍ୟନ୍ତ ଆସିଲେ, ହବା ବି ଦ୍ୱିପ୍ରହର ହୋଇଯିବ । ତେଣେ କ୍ଷମାପ୍ରାର୍ଥନା ସଭାକୁ ଯିବାକୁ ହେବ ।

ବାଟରେ ଫେରିବାବେଳେ ମାଇନର ସ୍କୁଲରେ ସଭା ହେଉଥିବାର ଚନ୍ଦ୍ରକାନ୍ତ ଦେଖିଲେ । ଗୁରୁଦିବସ ସଭା । ସରପଞ୍ଚ ସଭାପତି । ଶିକ୍ଷକମାନେ ବକ୍ତୃତା ଦେଉଥିଲେ । ପଣ୍ଡିତଙ୍କର ଗୋଡ଼ ଅଟକିଲେ । ଜଣେ ବକ୍ତା କହୁଥିଲେ, "ଆମେ ଶିକ୍ଷକ, ଆମେ ଗୁରୁ, ଆମର ଦାବି— ତମେ ପିଲାଏ ଆମକୁ ସମ୍ମାନ କର, ଭକ୍ତି କର । ଆମକୁ ଭକ୍ତି ନ କଲେ ତମର ଭବିଷ୍ୟତ ଅନ୍ଧାର, ତମ ଜୀବନରେ ପଙ୍କୁତ୍ୱ ହୋଇଯିବ ।"

ପିଲାଏ ଅନ୍ଧକାର କେବେ ହେବ ଜାଣି ନ ପାରି ଗୁରୁଦିବସର ସୂର୍ଯ୍ୟାଲୋକ ଭିତରେ ସଭାସ୍ଥଳରେ ବସି ଅଧାସିଝା ଚିନାବାଦାମ

ଝୋପାକୁ ଥୁ ଥୁ କରି ପାଟିରୁ ଫିଙ୍ଗୁଥିଲେ । ଗୋଟାଏ କଅଣ ରହସ୍ୟ ହେଉଛୁ ଭାବି ମଜାରେ ହସି ହସି ଗଡ଼ାଗଡ଼ ହେଉଥିଲେ ।

ପଣ୍ଡିତେ ଫେରିଆସିଲେ । ମନଟା ବିଷଣ୍ଣ ହୋଇଗଲା । ଚନ୍ଦ୍ରକାନ୍ତ ଘରପାଖେ ପହଞ୍ଚିଗଲେ । ଘରପାଖ ଗୁହାଳ ଭିତରୁ ହମ୍ବା ରଡ଼ି କରି ପଣ୍ଡିତଙ୍କର ନବଜାତ ବତ୍ସଟି ମାଆଷୀରଫେନପୁଞ୍ଜପିକ୍ତ ମୁହଁରେ ତାଙ୍କର ଗୋଡ଼ ଘଷିବାକୁ ଆରମ୍ଭ କରିଦେଲା ।



ଚନ୍ଦ୍ରକାନ୍ତ ସ୍ତବ୍ଧ ଓ ବିସ୍ମିତ । ବାଛୁରୀଟି ଜନ୍ମହେବା ଦିନଠାରୁ ଏମିତି ଆନନ୍ଦରେ ପଣ୍ଡିତଙ୍କୁ ଯେତେବେଳେ ପାଏ, ତାଙ୍କର ହାତ ଗୋଡ଼କୁ ଘଷିପକାଏ । ଜାତିରେ ପଶୁ; ଅଥଚ ବାଛୁରୀଟିର ଏ ସମ୍ବର୍ଦ୍ଧନା ଦେଖି ପଣ୍ଡିତଙ୍କର ଆଖି ଛଳ ଛଳ ହୋଇଗଲା ।

ପଶୁର ଏ ସମ୍ବର୍ଦ୍ଧନା ତାଙ୍କୁ ରୋମାଞ୍ଚିତ କଲା । ପରିହାସରେ ଲୋକେ କହନ୍ତି ଗୁରୁଗୁଡ଼ାକ ଗୋରୁ । ବୋଧହୁଏ ଜାତିଆଣଭାବ ଦେଖିଲା ଏ ବାଛୁରୀ । ସେଥିପାଇଁ ତାର ଏ ଆନନ୍ଦ ! ହେଲେ ଏ ତ ଆଉ ଷ୍ଟ୍ରାଇକ୍ କରିବନି, କି ଦାବୀ କରିବନି ତାର କାନ ଧରିବାରୁ କ୍ଷମା ଭିକ୍ଷା ?

ମନେପଡ଼ିଲା ଚନ୍ଦ୍ରକାନ୍ତଙ୍କୁ କ୍ଷମାପ୍ରାର୍ଥନା କରିବାକୁ ହେବ । ନ ହେଲେ ଧନଞ୍ଜୟଙ୍କ ବିପନ୍ନ । ସଂସ୍କୃତ ପଣ୍ଡିତ ଚନ୍ଦ୍ରକାନ୍ତ ମହାପାତ୍ର ଗଲେ ପ୍ରପୋଜ୍‌ଡ ହାଇସ୍କୁଲ୍ ଆଡେ ଯେଉଁଠି ତାଙ୍କର ପୂର୍ବତନ ଶିଷ୍ୟମାନେ ଛୁଟା ହୋଇଥିବେ ଗୁରୁଙ୍କର କ୍ଷମାପ୍ରାର୍ଥନାର ବାଣୀ ଶୁଣିବା ପାଇଁ ।

ଆଉଥରେ ବାଛୁରୀଟି ହମ୍ବା ରଡ଼ି କଲା । ପଣ୍ଡିତେ ପଛକୁ ଫେରି ନୀରବରେ ଆଖି ଦୁଇଟିକୁ ପୋଛି ଆଣିଲେ ।

# ହେଡମାଷ୍ଟର

ଶ୍ରୀ ବିଭୂତି ଭୂଷଣ ତ୍ରିପାଠୀ

(ଏବେ ଶୀତଦିନ—ସାଙ୍ଗକୁ ପୁଣି ରବିବାର । କାଲି ରାତିରେ କ୍ଲବରୁ ଫେରୁ ଫେରୁ ତାରିଖ ବଦଳି ଯାଇଥିଲା । ଶନିବାର ସନ୍ଧ୍ୟାଟା ଖାଲି ଖୁବ୍ ଜମି ଉଠିଥିଲା । କେତେକ ସମଝଦାର ବନ୍ଧୁ ଜୁଟି ଯାଇଥିଲେ । ଫଳରେ ଗ୍ଲାସ ଝୁଙ୍କରେ ପାନୀୟର ମାତ୍ରା ସୀମା ଅତିକ୍ରମ କରିଯାଇଥିବା ବିଚିତ୍ର ନୁହେଁ । କିନ୍ତୁ ସେଥିରେ କିଛି ଯାଏ ଆସେ ନାହିଁ; ମାତ୍ରା ଯେତେ ଅଧିକ ହେଲେ ବି ପାଦ ଟଳିବ ନାହିଁ । ଡ୍ରାଇଭିଂ ହ୍ୱିଲ୍ ଉପରେ ହାତ ଥରିବ ନାହିଁ । ପରଦିନ ତ ରବିବାର । ଏଗାରଟା ବେଳେ ବିଛଣା ଛାଡ଼ିଲେ ବି କ୍ଷତି ନାହିଁ ।

ସକାଳ ସାଢ଼େ ସାତ ବାଜି ଯାଇଥିଲେ ବି ମୁଁ ଯେତେବେଳେ ନିଘୋଡ଼ ନିଦରେ ଅଚେତନ, କରୁଣାଙ୍କର ଅର୍ଥାତ୍ ମୋ ସ୍ତ୍ରୀଙ୍କର ଅକରୁଣ ତୁହିନଶୀତଳ କରସ୍ପର୍ଶରେ ମୁଁ ଚେଇଁଉଠିଲି । ଆଜି ତ ରବିବାର । କୌଣସି ଏନ୍‌ଗେଜ୍‌ମେଣ୍ଟ ନ ଥିବାର କଥା । କବାଟ ଝରକା ବନ୍ଦ କରିଦେଇ ପର୍ଦ୍ଦା ଟାଣିଦେଇ ଆମ ବେଡ୍‌ରୁମ୍ ଏରିଆକୁ ନୀରବ ନିସ୍ତବ୍ଧ କରିଦେଇ କରୁଣାଙ୍କର ତ ତଳକୁ ଖସିଯିବା କଥା । ଟିଲିପିଲା ବି ଉପରକୁ ଏ ସମୟରେ ଆସିବାର ବାରଣ ଅଛି । ରବିବାର ସକାଳ ପାଇଁ ଏଭଳି ଏକ ବ୍ୟବସ୍ଥା ବହୁଦିନରୁ ଚଳି ଆସୁଛି । ତା'ହେଲେ ଆଜି ଏ ବ୍ୟତିକ୍ରମ କାହିଁକି ? ରୋଷକଷାୟିତ ଦୃଷ୍ଟି କରୁଣାଙ୍କ ଆଡ଼େ ଥରେ ନିକ୍ଷେପ କରି କଡ଼ ଲେଉଟାଇ ପୁଣି ଥରେ ଶୋଇବାର ଉଦ୍ୟମ କରୁଥିଲି,) କରୁଣା ବଡ଼ ବ୍ୟସ୍ତ ହୋଇ କହି ଉଠିଲେ, "ଏ, ନିଦ ଭାଙ୍ଗି ଦେଇ ଉଠ, ତଳକୁ ଯାଅ । କିଏ ଜଣେ ଭଦ୍ରଲୋକ ଦେଢ଼ ଘଣ୍ଟା ହେଲା ଆସି ବସିଛନ୍ତି ତୁମକୁ ଦେଖା କରିବେ ବୋଲି……!"

ଏଥର ଅନ୍ତଃପୁରୁ ଝରକା ବାଟେ ଉତ୍ତର ଆସିଲା, "ଭଦ୍ରଲୋକ ଆସିଛନ୍ତି । କହିଦେଲେ, ଆଜି ରବିବାର, ଦେଖା ହେବ ନାହିଁ ।"

କରୁଣା ଓଠ ଉପରେ ଅଙ୍ଗୁଳି ରଖି କହି ଉଠିଲେ, "ଚୁପ୍, ଚୁପ୍, ଏତେ ପାଟିଟାଏ କରନାହିଁ । ମୁଁ କ'ଣ ମୋ ଚେଷ୍ଟା କରିନାହିଁ ! କିନ୍ତୁ ଭଦ୍ରଲୋକ ଉଠିବାର ନାମ ଧରୁନାହାନ୍ତି । କହୁଛନ୍ତି, "ହଉ, ହଉ, ସେ ଉଠୁ, ମୁଁ ବସିଛି ।" କି ଚମତ୍କାର କଣ୍ଠ, ଲମ୍ବା ଧଳା ଦାଢ଼ି, ଆଖିରେ ସୁନା ଚଷମା, ବେଶ୍ ସମ୍ଭ୍ରାନ୍ତ ବୃଦ୍ଧ ଭଦ୍ରଲୋକ । ତୁମ ସହିତ ଖୁବ୍ ଘନିଷ୍ଠତା ଥିଲାପରି ମନେ ହେଉଛି । ଝିଅଙ୍କୁ ଡକାଇ ପଠାଇଲେ । ଟୁନୁ ରିନାଙ୍କୁ ପଠାଇଦେଲି । ଝିଅ ଦି'ଟାଙ୍କ ସହିତ ତାଙ୍କର ସେ କି ଗପ, କି ହୋ ହୋ ହସ ! ଚା' ପଠାଇଲି, ମନା କରିଦେଲେ । ସିଗ୍ରେଟ, ପାନ ଫେରି ଆସିଲା । ମୋତେ ଶୁଣାଇ କହିଲେ, "ମା, ମୋର ଏସବୁ କିଛି ଅଭ୍ୟାସ ନାହିଁ । ଗୋଲଗଣାଥିକୁ ଟିକେ ଦେଖିବାକୁ ଆସିଥିଲି, ମୋ ପାଇଁ ବ୍ୟସ୍ତ ହେବ ନାହିଁ ।"

ତଡ଼ିତ୍‌ସ୍ପୃଷ୍ଟ ପରି ମୁଁ ଉଠି ବସିଲି । ଏ ତ ଆମ ହେଡମାଷ୍ଟର— ମୋର ସ୍କୁଲ ଜୀବନର ହେଡମାଷ୍ଟର । ଚେୟାର ଉପରୁ ଡ୍ରେସିଂ ଗାଉନ୍‌ଟାକୁ ଟାଣିଆଣି ଚଟିଯୋଡ଼ିକ ଗୋଡ଼ରେ ଗଳାଇ ବାହାରି ପଡ଼ୁଥିଲି ତଳକୁ ଯିବାପାଇଁ ।

ହେଡମାଷ୍ଟରଙ୍କ କଥା କରୁଣା ବହୁବାର ମୋ'ଠାରୁ ଶୁଣିଥିବେ । ସେ ଥକ୍କା ହୋଇ କ୍ଷଣକ ପାଇଁ ଛିଡ଼ା ହୋଇଗଲେ । କିନ୍ତୁ ସେ ବୁଦ୍ଧିମତୀ । ମୋତେ ସେ ବାଥ୍‌ରୁମ୍ ଆଡ଼କୁ ଠେଲିଦେଇ ଚୁପ୍ ଚୁପ୍ କହିଲେ, "ତୁମେ ମୁହଁଟା ଧୋଇନିଅ । ମୁଣ୍ଡଟାକୁ କୁଣ୍ଡାଇ ପକାଅ— ସେଠି ଭାଇଭାକଲୋନ୍ ସ୍ପ୍ରେ ଅଛି । ମୁଁ ଚଟ୍‌କରି କପେ ଚା' ଆଣି ଦେଉଛି—ଖାଇ ଦି'ଟା ଲବଙ୍ଗ, ଗୁଜୁରାତି ଚୋବାଇ ତଳକୁ ଯାଇ ତୁମ ହେଡମାଷ୍ଟରଙ୍କୁ ଦେଖା କର ।"

ବୁଝିପାରିଲି କରୁଣାଙ୍କ ଉପଦେଶର ମର୍ମ । ଶନିବାରର ମଧ୍ୟରାତ୍ରିର ହେଙ୍ଗ୍ ଓଭର ଦୃଷ୍ଟିରେ ତାଙ୍କର ଏ ପ୍ରତିଷେଧକ ବ୍ୟବସ୍ଥା । ମୋର ଏଇ କିମ୍ଭୂତ ଅବସ୍ଥାରେ ବି ହସି ପକାଇଲି ।

(ତଳ ଚାଳରୁ ଭାସି ଆସୁଛି ପିଲାଙ୍କ ସଙ୍ଗେ ହେଡମାଷ୍ଟରଙ୍କ ସାବଲୀଳ କଣ୍ଠ, ପ୍ରାଣଖୋଲା ହୋ ହୋ ହସ । ତିରିଶ ଚାଳିଶ ବର୍ଷର ବ୍ୟବଧାନ କ୍ଷଣକ ପାଇଁ ଅପସରି ଗଲା । ମୁଁ ସେତେବେଳେ କ୍ଲାସ୍ ସେଭେନ୍ କି ଏଇଟ୍‌ରେ ପଢୁଥାଏ । ମୋଟାସୋଟା ନ' ଦଶ ବର୍ଷର ବାଳକ । ଲୁଗାକାନି କମରରେ କଷା; ଖାଲି ଦେହ, ମୁଣ୍ଡରେ ଝଙ୍କାଏ ବାଳ । ମୋ ବଡ଼ଭାଇକୁ ଜର ହୋଇ ଛାଡ଼ି ଯାଇଥାଏ—ପାଣି ଅରୁଚି । ମୋତେ ଚୁପ୍ କରି କହିଲା, "ଯା ତ, ଜମିଦାର ଘର ବରକୋଳି ଗଛରୁ ଦରପାଚିଲା କୋଳି ମୋ ପାଇଁ ଆଣିବୁ । ଭାରି ଇଚ୍ଛା ହେଉଛି ଖାଇବାକୁ—ଏସ୍ତୁ, ବୋଉକୁ କହିବୁ ନାହିଁଟି !" ସଙ୍ଗେ ସଙ୍ଗେ ଛୁଟିଲି । ଶୀତଦିନିଆ ସକାଳ । ଜମିଦାର ଘର ବାଡ଼ି ଭିତରକୁ ପଶିଲି । ଅନେକ ଦ୍‌ବ୍ଧୂରି କରି ଠାବ କଲି ବରକୋଳି ଗଛର ଅଗ ଡାଳରେ ଗୋଟାଏ ନାଲି ଟକ୍ ଟକ୍ କୋଳି । ସେଇଟା ନେବି ନନା ପାଇଁ । ଢେଲା ପକାଇଲି, ଫୋପାଡ଼ି ମାରିଲି । କିଛି ହେଲା ନାହିଁ । କଞ୍ଚା କୋଳି କେତେକ ଝଡ଼ି ପଡ଼ିଲା; କିନ୍ତୁ ସେ ପାଚିଲା କୋଳିଟା ସେମିତି ଅଗ ଡାଳରେ ପଷ ହଣ୍ଡରେ ଜକ୍ ଜକ୍ କରୁଥାଏ । ଝାଳ ବୋହିଗଲା । ଛାଇରେ ବସି ଟାକ ମାରେ ପୁଣି ଉଠି ଢେଲା ଫୋପାଡ଼ି ମାରିଲି । ଅନେକ ଚେଷ୍ଟା ପରେ ଗୋଟାଏ ଫୋପାଡ଼ ଯାଇ ଠିକ୍ ଜାଗାରେ ବାଜିଗଲା । ସେଇ କୋଳିଟା ତଳେ ଆସି ପଡ଼ିଲାମାତ୍ରକେ ଦୌଡ଼ିଯାଇ ତାକୁ ଗୋଟାଇ ଆଣି ଲୁଗାକାନିରେ ପୋଛୁ ଘରକୁ ଯିବାକୁ ଗୋଡ଼ ବଢ଼ାଉଛି, ବଙ୍ଗଳା ଭିତରୁ ବାହାରି ଆସିଲେ ଏକ ଦାଢ଼ିଆ ବୁଢ଼ା ଭଦ୍ରଲୋକ । ଆଖିରେ ସୁନା ଚଷମା, ନିଷ୍କଳ ଯୋଡ଼ାଏ ଆଖି, ଆଉ ଦାଢ଼ି ଭିତରୁ ଧଳା ଧଳା ଦୁଇପାଟି ଦାନ୍ତ । ମୁଁ ଡରରେ ପ୍ରାୟ ଥରୁଥିଲି । ମୁଁ ଯେତେ ଢେଲା ଫୋପାଡ଼ିଲିଣି ସେଥିରୁ ଗୋଟେ ଯୋଡ଼େ ଯାଇ ଘର ଭିତରେ ପଡ଼ିଲା କି ! ଜମିଦାର ଘର ଗଛରୁ କୋଳି ଚୋରି କରୁଛି । ମୋତେ ଜେଲ୍ ଦେବେ କି ! ହେ ଭଗବାନ, ମୋତେ ଏଇ ଥରଟା ଛାଡ଼ିଦିଅ—ଆଉ କେବେ ଏମିତି କରିବି ନାହିଁ । କିନ୍ତୁ ଏ କ'ଣ ! ସେ ବୁଢ଼ା ଭଦ୍ରଲୋକ ହସି ହସି ମୋ ପାଖକୁ ଆସି ପିଠି ଥାପୁଡ଼େଇ ଦେଇ କହିଲେ, "ଓ୍ୱେଲ୍ ଡନ୍, ମାଇଁ ବୟ !")

(ପରେ ଜାଣିଲି, ସେ ଆମ ସ୍କୁଲର ନୂଆ ହେଡମାଷ୍ଟ୍ର (ମଧୁସୂଦନ ଗ୍ରନ୍ଥାବଳୀରୁ ପଦ୍ୟ ମୁଖସ୍ଥ କଲାବେଳେ ମୂଳ ପୃଷ୍ଠାରେ କବିଙ୍କ ଛବିଟି ମୋତେ ଭାରି ଭଲ ଲାଗୁଥାଏ । ସେଇ ଛବି ସଙ୍ଗେ ଆମ ହେଡମାଷ୍ଟ୍ରଙ୍କ ମୁହଁରେ କି ଅଦ୍ଭୁତ ମେଳ ! ସେଇ ଚଉଡ଼ା କପାଳ, ଧଳା-କଳା ଦାଢ଼ି, ସୁନା ଚଷମା ଓ ଚଷମା ତଳେ ଉଜ୍ଜ୍ୱଳ ସୁନ୍ଦର ଆଖିଯୋଡ଼ିକ । ମୋ ମନରେ ମଧୁବାବୁ ଓ ହେଡମାଷ୍ଟର ମିଶି ଏକ ହୋଇ ଯାଇଛନ୍ତି । ସେଇ ପିଲାଟି ଦିନରୁ ସେ ଦୁଇ ମହାପୁରୁଷଙ୍କ ଗମ୍ଭୀର ଛାପ ମୋ ମନ ଉପରେ ଆଙ୍କି ହୋଇଯାଏ ।)

(କେଇଟା ଦିନ ଭିତରେ ସ୍କୁଲର ଆବହାଓ୍ୱା ପୁରାପୂରି ବଦଳି ଗଲା । ହେଡମାଷ୍ଟ୍ରଙ୍କ ନାମରେ ସମସ୍ତେ ଥରହର । ଆମମାନଙ୍କୁ ସେ ଯେତିକି ସ୍ନେହ କରନ୍ତି, ସେତିକି କଡ଼ା । ସାମାନ୍ୟ ଦୋଷ ତ୍ରୁଟି ତାଙ୍କ ଦୃଷ୍ଟି ଏଡ଼େଇବାର ଉପାୟ ନାହିଁ । ମନେପଡ଼ୁଛି, ଥରେ ଡେସ୍କ ଉପରକୁ ଝୁଙ୍କିପଡ଼ି ହାତ ଉପରେ ମୁଣ୍ଡ ରଖି ଟିକିଏ ଢୁଳାଇ ପଡ଼ିଥିଲି ନା କ'ଣ ହେଡମାଷ୍ଟ୍ରେ ଗର୍ଜି ଉଠିଲେ, "ଷ୍ଟୁ, ୟୁ ଷ୍ଟାଣ୍ଡ ଅପ୍ ଅନ୍ ଦି ବେଞ୍ଚ !" କେବଳ ସେଇ ପିରିୟଡଟା ନୁହେଁ; ଲଗାଲଗି ଦୁଇ ପିରିୟଡ ବେଞ୍ଚ ଉପରେ ଠିଆହୋଇ ରହିଲି । ଏ ତ ସାମାନ୍ୟ ଦଣ୍ଡ । କ୍ଲାସକୁ ଟାସ୍କ ନ କରି ଆସିଲେ ବା କୌଣସି ଫାଜିଲାମି ବା ଦୁଷ୍ଟାମି ଆଖିରେ ପଡ଼ିଲେ ଖୋଲା ହାତପାପୁଲି ଉପରେ ରୁଲିବ ବେହାଘାତ ଏକ, ଦୁଇ, ତିନି—ସାରା କ୍ଲାସ ସ୍ତବ୍ଧ, ନିସ୍ପନ୍ଦ ।)

(କି ଚମତ୍କାର ପଢ଼ାନ୍ତି ହେଡମାଷ୍ଟ୍ରେ । ଇଂରାଜୀ କବିତା ହେଉ ବା ଓଡ଼ିଆ କବିତା ହେଉ, ସେ ଯେତେବେଳେ ଆବୃତ୍ତି କରି ପଢ଼ନ୍ତି (ବହି କେବେ କେମିତି ଦେଖନ୍ତି ସିନା, ସବୁ ମୁହଁରୁ) ଶବ୍ଦଗୁଡ଼ିକର ଅର୍ଥ ବୁଝୁଁ ବା ନ ବୁଝୁଁ ସେ କବିତାର ମର୍ମ ଯେପରି ଆମ ପ୍ରାଣକୁ ସ୍ପର୍ଶ କରୁଥିଲା । ମନେଅଛି, ଥରେ ହେଡମାଷ୍ଟ୍ରେ 'ମାଇଁ ମଦର୍' ବୋଲି ଗୋଟିଏ ଶ୍ଳୋକ ଇଂରାଜୀ କବିତା ମାନେ ନ ବୁଝାଇ ଧୀରେ ଧୀରେ ବୋଲି ଯାଉଥାନ୍ତି । ହଠାତ୍ କ'ଣ ଗୋଟାଏ ଶବ୍ଦ ଶୁଣି ପଛକୁ ଅନାଇ ଦେଖେଁ,

କୈଳାସ କହିଁ କହିଁ ହୋଇ କାନ୍ଦୁଛି । କୈଳାସର ମା' କଷ୍ଟ ଦିନ ହେଲା ମରିଯାଇଥାନ୍ତି ।

ହେଡମାଷ୍ଟରଙ୍କର ସବୁଠୁ ପ୍ରିୟ କବିତା ଆବୃତ୍ତି । ଉଚ୍ଚାରଣ ଶୁଦ୍ଧ ନ ହେଲେ ବାରମ୍ବାର ଦଶ କୋଡ଼ିଏ ଥର ପ୍ରତ୍ୟେକ ଶବ୍ଦକୁ ସ୍ପଷ୍ଟରୂପେ ଉଚ୍ଚାରଣ କରି ବୋଲିବାକୁ ହେବ । ଆମ ପ୍ରାର୍ଥନା କ୍ଲାସରେ ହେଡମାଷ୍ଟ୍ରେ ଯେତେବେଳେ ତାଙ୍କ ଗୁରୁଗମ୍ଭୀର କଣ୍ଠରେ ଆରମ୍ଭ କରନ୍ତି, 'ଅଖିଳ ବ୍ରହ୍ମାଣ୍ଡ ପତି ମୋ ଜୀବନ ସ୍ୱାମୀ' ଓ ବୋଲିଯାନ୍ତି, 'ସତ୍ୟ ପଥେ ଧର୍ମ ପଥେ ଘେନିଯାଅ ମୋତେ, ଉପାଅ ଚରଣ ମୋର ତବ ପ୍ରେମ ସ୍ରୋତେ' ମୋ ରୁମ ଠାକୁର ଉଠେ । ସ୍କୁଲ, କଲେଜ ଛାଡ଼ିବାର ବହୁ ବର୍ଷ ପର୍ଯ୍ୟନ୍ତ ଏଇ ଦୁଇଟି ପଂକ୍ତି ଆବୃତ୍ତି କରି ମୁଁ ଗଭୀର ସାନ୍ତ୍ୱନା ପାଉଥିଲି ।)

(ଯେଉଁ ଛଅ ସାତ ବର୍ଷ ମୁଁ ସ୍କୁଲରେ ଥିଲି ହେଡମାଷ୍ଟରଙ୍କର ସ୍ନେହ, ବ୍ୟକ୍ତିତ୍ୱ, ଶିକ୍ଷା ଓ ଆଦର୍ଶର ପ୍ରଭାବ ମୋତେ ପୂର୍ଣ୍ଣଭାବରେ ଆଚ୍ଛନ୍ନ କରି ପକାଇଥିଲା । ପଢ଼ାପଢ଼ିଠାରୁ ଆରମ୍ଭ କରି କ୍ଲାସ ବାହାରେ ଚାଲିଚଳଣି ସବୁ କ୍ଷେତ୍ରରେ ତାଙ୍କର ଅଦୃଶ୍ୟ ଅଙ୍ଗୁଳି ନିର୍ଦ୍ଦେଶ ଅନୁଭବ କରୁଥିଲି । ସ୍କୁଲ ଛାଡ଼ି କଲେଜରେ ଭର୍ତ୍ତି ହେଲି । ତାପରେ ବିଦେଶରେ ଉଚ୍ଚଶିକ୍ଷା ପାଇ ଫେରିଆସି ଗୋଟାଏ ବଡ଼ ଫାର୍ମରେ ଇଞ୍ଜିନିୟରଭାବେ ମୋ ଚାକିରି ଜୀବନର ଆରମ୍ଭ । ମଧ୍ୟେ ମଧ୍ୟେ ହେଡମାଷ୍ଟରଙ୍କଠାରୁ ଚିଠି ପାଏ । ଶୁଦ୍ଧ ଓଡ଼ିଆରେ କେତୋଟି ସୁନ୍ଦର ସୁନ୍ଦର କଥା—ଶୁଭେଚ୍ଛା—ଆଶୀର୍ବାଦ । ଉତ୍ତର ଲେଖେ ଇଂରାଜୀରେ (ଓଡ଼ିଆ ଲେଖିବା ଅଭ୍ୟାସ କ୍ରମେ ଛାଡ଼ି-ଯାଇଥିବାରୁ) ଡରି ଡରି ଲେଖେଁ ଉତ୍କଣ୍ଠାରେ ଦେଖି, ଯେମିତି ବନାନ ଭୁଲ ନ ରହେ । ବନାନ ବା ବ୍ୟାକରଣ ଭୁଲ ଦେଖିଲେ ହେଡମାଷ୍ଟ୍ରେ କିଭଳି ଅସନ୍ତୁଷ୍ଟ ହୋଇପଡ଼ନ୍ତି ସେ ଦୃଶ୍ୟ ମନରେ ପଡ଼ିଯାଏ ।)

ତା'ପରେ ବହୁ ବର୍ଷ ଗଡ଼ିଯାଇଛି । ଚାକିରିର ସିଡ଼ିର ଧାପେ ଧାପେ ଉଠି ମୁଁ ପ୍ରାୟ ଶୀର୍ଷ ସ୍ଥାନ ଅଧିକାର କରିଛି । ଯଥେଷ୍ଟ ବିତ୍ତ ଓ ପ୍ରତିପତ୍ତି ଅର୍ଜନ କରିଛି । ମୁଁ ଆଜି ଫେକ୍ଟ୍ରିର ବଡ଼ ସାହେବ ।

ହେଡମାଷ୍ଟ୍ରଙ୍କ ସଙ୍ଗେ ଶେଠିର ଆଦାନପ୍ରଦାନ ନ ଥିଲେ ବି ଖବର ରଖିଥିଲ—ସେ ସ୍କୁଲରୁ ଅବସର ନେଇ ପୁରୀରେ ରହୁଥିଲେ । ତାଙ୍କ ସ୍ତ୍ରୀଙ୍କର ମୃତ୍ୟୁ ହୋଇ ଯାଇଥିଲ । ଏକମାତ୍ର ପୁତ୍ର ଦୂର ଦେଶରେ କେଉଁଠି ଚାକିରି କରୁଥିଲ । ସେ ଏକାକୀ ପୁରୀଧାମରେ ରହି ବାକି ଜୀବନଟା ଜଗନ୍ନାଥଙ୍କ ପାଦତଳେ କଟାଇ ଦେଉଛନ୍ତି । ଏ ଖବର ପ୍ରାୟ ଆଠ ଦଶ ବର୍ଷ ତଳେ ପାଇଥିଲି । ତାପରେ ଆଜି ତାଙ୍କର ଆମ ଘରେ ଆବିର୍ଭାବ ।

ସେଇ ପୁରୁଣା ଅତୀତର କେତେଗୁଡ଼ାଏ ଅସ୍ପଷ୍ଟ ଛବି ମନଗହ୍ୱରର ଅନ୍ଧାରରେ ଭାସିଉଠିଲ । କରୁଣାଙ୍କ ଉପଦେଶଗୁଡ଼ିକ ଅକ୍ଷରେ ଅକ୍ଷରେ ପାଳନ କରି ତର ତର ହୋଇ ସିଡ଼ିରେ ତିନି ଥର ପାଉଛ ଓହ୍ଲାଇ ଯାଇ ଲେଣ୍ଡିଂଠାରେ ଘୂରିଗଲବେଳକୁ ହଠାତ୍ ଆଖିରେ ପଡ଼ିଗଲ ଡ୍ରଇଂ ରୁମ୍‌ର ଭାରି ପର୍ଦ୍ଦା ଫାଙ୍କରେ ଏକ ଅଦ୍ଭୁତ ଦୃଶ୍ୟ । ସେଇଠି 'ବେନିସ୍‌ଟାର' ଉପରେ ଝୁଙ୍କି ପଡ଼ି ଠିଆ ହୋଇଗଲି । ସୋଫାରେ ବସିଛନ୍ତି ହେଡମାଷ୍ଟ୍ରେ । ବଡ଼ ଶୀର୍ଣ୍ଣ ଦେଖାଯାଉଛନ୍ତି । ମୁହଁର ପାଚିଲ ଦାଢ଼ି ଛାତି ଉପରକୁ ଝୁଲି ପଡ଼ୁଛି । ଆଖିରେ ସେଇ ସୁନା ଚଷମା ଚକ୍ ଚକ୍ କରୁଛି । ଧଗୁଦନ ପରି କାନ୍ଧରେ ଏକ ସିଲକ୍ ଚଦର । କୋଳରେ ବସିଛି ଝିଅ ରୀନା । ପୁଅ ଟୁନୁ କାନ୍ଧ ପାଖରେ ମୁହଁ ଗୁଞ୍ଜି କ'ଣ ସବୁ କହୁଛି । ଆଙ୍ଗୁଳିରେ ରୀନାର ଝୁରୁଝୁରିଆ ବାଳ ସଜାଡ଼ି ଦେଉଁ ଦେଉଁ ଏଣେ ଟୁନୁ କଥା ମନ ଦେଇ ଶୁଣି ହୋ ହୋ ହୋଇ ହସୁଛନ୍ତି । ଟୁନୁ ପିନ୍ଧିଛି ସ୍ଲିପିଂ ସୁଟ୍, ରୀନା ଆଲ୍‌ସଟର । ଟୁଣ୍ଡି କେତେକ କଥାବାର୍ତ୍ତା କାନରେ ଆସି ପଡ଼ିଲ ।

ଟୁନୁ—ଏପ୍ସ ରୀନା, ଏ ଗ୍ରାଣ୍ଡ ଓଲ୍‌ଡମ୍ୟାନ୍ ଠିକ୍ କାହାପରି ଦେଖା ଯାଉଛନ୍ତି, କହିଲୁ ? ସାଣ୍ଟାକ୍ଲଜ୍, ନୁହେଁ ? ଆମେ ଏହାଙ୍କୁ ଫାଦର୍ କ୍ରିସ୍‌ମାସ୍, ଖାଲି ଫାଦର୍ ଡାକିବା । (ତା'ପରେ ହେଡମାଷ୍ଟ୍ରଙ୍କ ଆଡ଼େ) ଆପଣଙ୍କର କିଛି ଆପତ୍ତି ନାହିଁ ତ ?

ହେଡମାଷ୍ଟର—ନା, ନା, ମୁଁ ଭାରି ଖୁସି । ମୁଁ ତୁମର ଫାଦର୍ କ୍ରିସ୍‌ମାସ୍ । ଚମତ୍କାର ! ( ବୁଢ଼ା ଓ ପିଲାଙ୍କର ହୋ ହୋ ହସ) ।

ହେଡମାଷ୍ଟର—ଆଚ୍ଛା, ପିଲାଏ, ତୁମେ ଯେଉଁସବୁ ପଦ୍ୟ ମୁଖସ୍ଥ କରିଛ ସେଥିରୁ ଗୋଟାଏ ଫାଦର୍‌ ଜିସ୍‌ମାସ୍‌ଙ୍କୁ ଶୁଣାଇଲ ।

ଟୁନୁ—ଶୁଣିବେ ଫାଦର୍‌, ମୁଁ ରେସିଟେସନ୍‌ରେ ଯେଉଁ ଗାଇମ୍‌ ବୋଲି ପ୍ରାଇଜ୍‌ ପାଇଥିଲି ?

ଗୀନା—ମୁଁ ଟୁନୁଠାରୁ ଆହୁରି ଭଲ ରିସାଇଟ୍‌ କରିପାରେ ବୋଲି ତାଙ୍କ ସବୁବେଳେ କହନ୍ତି । (ହେଡମାଷ୍ଟରଙ୍କ ମୁହଁକୁ ଚା'ର ଗ୍ଲେଟ ହାତରେ ନିଜ ଆଡ଼କୁ ଘୁରାଇ ନେଇ) ଶୁଣନ୍ତୁ, ଆଗ ମୋ ରେସିଟେସନ୍‌ ।

ହେଡମାଷ୍ଟର—(ଦୁଇ ପିଲାଙ୍କୁ ଛାତି ଉପରକୁ ଆଉଜାଇ ନେଇ) ଶୁଣିବ, ଶୁଣିବ, ସବୁ ଶୁଣିବ । ଆଚ୍ଛା ଗୀନା, ତୁମେ ଆଗ ଆରମ୍ଭ କର । ତା'ପରେ ଟୁନୁର ପାଳି ।

ଗୀନା—(ମୁଣ୍ଡରେ ଆଙ୍ଗୁଳି ଘଷି ମନେ ପକାଇ) ହଁ, ମନେପଡ଼ୁଛି, ଶୁଣନ୍ତୁ, କେମିତିକା ଫାଷ୍ଟକ୍ଲାସ ଗାଇମ୍‌—

Jack & Jill went up the hill
To fetch a pail of water,
Jack fell down & broke his crown
And Jill came tumbling after.

ଟୁନୁ—ହେଃ, ଟ୍ରାସ୍‌ ! ଫାଦର୍‌, ଶୁଣନ୍ତୁ ମୋରଟା, କେମିତି ଚମତ୍କାର ।

Ba Ba black sheep have you any wool ?
Yes sir, yes sir, Three bags full;
One for my master, One for the dame,
One for the little child down the lane,

ତା’ପରେ ଝୁନୁ ଓ ଗୀନାଙ୍କର ସମବେତ କଣ୍ଠସ୍ୱର :

**Mary, Mary,**

**Quite Contrary**

**How does your garden grow !**

ହେଡମାଷ୍ଟରଙ୍କ ହସ ଆଉ ଶୁଭୁନାହିଁ । କେତେ ସମୟ ପରେ ହେଡମାଷ୍ଟରଙ୍କ କ୍ଷୀଣ କଣ୍ଠ : ଆଚ୍ଛା, ବାବା, ଓଡ଼ିଆ ପଦ୍ୟ କବିତା କିଛି ଶିଖିଛ ? ଯେମିତି ଧର—

ସତ୍ୟ ପଥେ, ଧର୍ମ ପଥେ
ଘେନିଯାଅ ମୋତେ,
ଭସାଅ ପରାଣ ମୋର
ତବ ପ୍ରେମ ସ୍ରୋତେ··· ।

( ଗୀନା ଓ ଝୁନୁଙ୍କର ବେଦମ୍ ହସ । ମଝିରେ ମଝିରେ “ହାଓ ଫନ । ହାଓ ସୁଇଟ୍ !” )

ହେଡମାଷ୍ଟର—ପଢ଼ିଛ ନା ପିଲାଏ—

ଯାହା ମୁଁ କରଇଁ ଯାହା ମୁଁ କହଇଁ
ଯାହା ମୁଁ ଚିନ୍ତଇଁ ମନେ,
ଜଗତର କର୍ତ୍ତା ପରମ ଈଶ୍ୱର
ଜାଣୁଛନ୍ତି ପ୍ରତିକ୍ଷଣେ !

କିବା ‘ବାଲ୍ୟକାଳୁ ଧର୍ମ-ଧନ ମୁଁ ସଞ୍ଚିବ ଏ ଜୀବନ ଅନିଶ୍ଚିତ ।’

ଝୁନୁ ଓ ଗୀନା—(ଅସ୍ଥିର ହୋଇ) ନା, ନା, ଫାଦର୍, ଏ ତ ସବୁ ଓଲ୍ଡ ଭର୍ଣ୍ଣାକୁଲର । ଆମେ ତ ଓଡ଼ିଆ ପଢୁନାହିଁ—ସବୁ ଇଂଲିଶ୍··

ହେଡମାଷ୍ଟର—(କଣ୍ଠରେ କପଟ ଏକ ଆତଙ୍କ) ଆଚ୍ଛା, ତୁମେମାନେ ଓଡ଼ିଆ ଜାଣ ନାହିଁ, ଓଡ଼ିଆ ପଢ଼ିପାରିବ ନାହିଁ, ଓଡ଼ିଆରେ ଲେଖି ପାରିବ ନାହିଁ ? ସତିକିଆ ?

ସୀନା ଓ ଟୁନୁ—ନୋ, ନୋ, ଆମେ ବ-ଲୁ-କୁ-ଲ ଓଡ଼ିଆ ଜାଣୁ ନାହିଁ । ଫାଦର୍, ପଣିକଆ କଣ ?

ହେଡମାଷ୍ଟର—(ମୀରବ)

ହଠାତ୍ ସୀନା ପାଟିକରି ଉଠିଲ, "ଫାଦର୍, ଆପଣ କଣ୍ଟ ଖାଉ ନାହାନ୍ତି କାହିଁକି ? ଟି, କଫି, କୋକାକୋଲା ? କେଉଁଟା ଭଲ ଲଗିବ କହନ୍ତୁ ନା ଫାଦର୍ !" (କଣ୍ଠରେ କେମିତି ଅଳ, ଅଭିମାନ)

ଟୁନୁ—ଫାଦର୍, ଡାଡଙ୍କର କ୍ୟୁବାନ ସିଗାର ଅଛି—ଆଣିବ ଗୋଟେ ସେଥିରୁ ? ଭାରି ଚମତ୍କାର ଫ୍ଲେଭର୍ ।

ଟୁନୁ ଉଠି ଯାଉଥିଲ । ହେଡମାଷ୍ଟ୍ର ତାକୁ ଧରି ରଖି ହସି ହସି କହିଲେ, "ନାହିଁ ବାବା, ତୁମ ମା'ଙ୍କୁ ପଚା କହିଲ, ମୋର ସେ ସବୁ ଅଭ୍ୟାସ ନାହିଁ । ଆଚ୍ଛା, ପିଲାଏ, କହିଲ—ତୁମେ ସକାଳୁ କ'ଣ ଖାଇଛ ?"

ଟୁନୁ, ସୀନା—କାହିଁକି, ବେଡ୍ ଟି ! ବିଛଣାରେ ବସି ବସି ଟି ଖାଉଛୁ ।

ହେଡମାଷ୍ଟର—କ'ଣ ଟି ? (କେତେ ସମୟ ଚୁପ୍ ରହି) ତୁମ ବାପାଙ୍କ ଉଠିବା ଆଜ କେତେ ଡେରି ହେବ ?

ଟୁନୁ—(କାନ୍ଥର ଘଡ଼ି ଆଡ଼େ ଚାହିଁ) ବର୍ତ୍ତମାନ ତ ଆଠଟା । ଆଉରି ଘଣ୍ଟାଏ । କାଲି କ୍ଲବ୍ ନାଇଟ୍ ଥିଲ ନା, ଡାଡି ଫେରୁ ଫେରୁ ବହୁତ ରାତି ହୋଇଯାଇଥିବ ।

ସୀନା—ଏ ଟୁନୁ, ଶନିବାର ରାତିରେ ଡାଡ ଯେତେବେଳେ କ୍ଲବ୍‌ରୁ ଫେରନ୍ତି ତୁ ଦେଖିଛୁ ? ମୁଁ ଦେଖିଛି, ଥରେ ରାତି ଅଧରେ ମୋ ନିଦ ଭାଙ୍ଗିଗଲ । ତୁ ତ ପାଖ ଖଟରେ ସ୍ନୋର କରୁଥିଲୁ । (ଟୁନୁର ଭୀଷଣ ପ୍ରତିବାଦ—ମୁଁ କେବେ ସ୍ନୋର କରେନାହିଁ; ତୁ ରାତିସାରା ସ୍ନୋର କରୁ । ଯାହା ଫଳରେ ମୁଁ ଶୋଇ ପାରେନାହିଁ । ବାହାରେ

ଗାଡ଼ି ରହିବାର ଶବ୍ଦ ଶୁଣି ଝରକା ପାଖକୁ ଯାଇ ପର୍ଦ୍ଦା ଢ଼ୁଞ୍ଚାଇ ଦେଖିଲି, ଡାଡିଙ୍କୁ ଗାଡ଼ି ଭିତରୁ ଡ୍ରାଇଭର ଓ ରହିମ୍ ଧରି ଓହ୍ଲାଇ ଦେଉଛନ୍ତି । ତା'ପରେ ଆଉ ଝରକାରେ ଦେଖିଲି, ମାମି ଯାଇ ଡାଡିଙ୍କୁ ଧରି ଧରି ଉପରକୁ ଆଣୁଛନ୍ତି । ଡାଡି ଚାଲିପାରୁ ନ ଥାନ୍ତି, ଟଳିଟଳି ହେଉଥାନ୍ତି । ଭାବିଲି, ଡାଡିଙ୍କୁ ଜର ହୋଇଛି । କିନ୍ତୁ ତା ଆରଦିନ ଡାଡି ତ ଆମକୁ ନେଇ ପିକ୍ନିକ୍‌ରେ ଯାଇଥିଲେ ।

ଟୁନୁ—ଏ ଚୁପ୍ ଚୁପ୍ ! ଭୁଟା ଭୁଚ୍ଛା ହୁଣ୍ଡି ଦେ । ଶୁଣ, କାହାକୁ ଏ କଥା କହିବୁ ନାହିଁ । ଫାଦର୍ ନି ଯ୍‌ମାସ୍ ଶୁଣିଲେ ଶୁଣିଲେ । (ତା'ପରେ ହେଡ଼ମାଷ୍ଟ୍ରଙ୍କ ଉଦ୍ଦେଶ୍ୟରେ) ଆପଣ ଏ କଥା ଡାଡିଙ୍କୁ କହିଦେବେ ନାହିଁଟି !

ଗୁନା—ଫାଦର୍, ଜାଣନ୍ତି ନା, ଆମ ଡାଡି କେତେ ସିଗ୍ରେଟ ଖାଆନ୍ତି ? ମାସକୁ ଥାର୍ଟି ଟିନ୍‌ସ । ସିଗ୍ରେଟ ସରିଗଲେ ଟିଣ ସବୁ ମୋର, କି ମଜା !

ହେଡ଼ମାଷ୍ଟ୍ରଙ୍କ କଣ୍ଠ ଆଉ ଶୁଣା ଯାଉନାହିଁ । ତା'ପରେ କିଛି କାଳ ପିଲାମାନଙ୍କର କଳରବ ହସ । ମଝିରେ ରହିମ୍‌ର ସତର୍କବାଣୀ —"ବାବା, ମିସ୍ ବାବା, ଗୋସଲ ଖାନାମେ ଗରମ୍ ପାନି ଲଗାଦିୟା—ନାହାଲିଜିୟେ—ସାଢ଼େ ଆଠ ବଜ୍‌ଗୟୀ—ବେରେକଫାଷ୍ଟ ତୟାର ହୈ..."

କାନରେ ବାଜିଲା ହେଡ଼ମାଷ୍ଟ୍ରଙ୍କ ଅନୁଚ୍ଚ କଣ୍ଠସ୍ୱର—"ପିଲାଏ, ତୁମେମାନେ ଯାଅ, ଗାଧୋଇ ଖାଇବ, ଡେରି ହୋଇଗଲାଣି । ମୁଁ ଯାଉଛି । ବାପାଙ୍କୁ କହିବ, ତାଙ୍କ ପିଲାଦିନ ହେଡ଼ମାଷ୍ଟ୍ର ବୁଢ଼ା ଆସିଥିଲେ ।"

ହେଡ଼ମାଷ୍ଟ୍ର ଉଠି ଛିଡ଼ା ହେଲେ ।

ଟୁନୁ ଓ ଗୁନାଙ୍କର ସମବେତ 'ଟା' 'ଟା' ।

ଦରଜା ବନ୍ଦ ହେବାର ଶବ୍ଦ । ତା'ପରେ ସବୁ ଚୁପ୍‌ଚାପ୍ ।

ମୁଁ ଲେଣ୍ଡିଂ ଉପରେ ଷ୍ଟାଣ୍ଡୁ ପରି ଛିଡ଼ା ହୋଇ ରହିଲି । ଓହ୍ଲାଇ ଯାଇ ହେଡମାଷ୍ଟ୍ରଙ୍କୁ ଅଟକାଇ ଫେରାଇ ଆଣିବାର ଶକ୍ତି, ସାହସ ମୋର ନ ଥିଲା । ଏ ଭଲ । ତାଙ୍କର ସନ୍ମାନପ୍ରତିମ ଆଦର୍ଶ ଗ୍ରହ ଗୋଲକନାଥଙ୍କୁ ସେ ମୋ'ଠି ଆଉ ଖୋଜି ପାଆନ୍ତେ ନାହିଁ ।

ଡ୍ରେସିଂ ଗାଉନ୍‌ରୁ କାନ୍ଧ ଉପରେ କାହାର କରସ୍ପର୍ଶ ପାଇ ଫେରି ଚାହିଁଲି—କରୁଣା । ଛଳ ଛଳ ଆଖିରେ ସେ ମୋ ଆଡ଼େ ଚାହିଁଛନ୍ତି । ମୋ ଆଖିରୁ ଧାର ଧାର ଲୁହ ଗଡ଼ିଯାଉଛି ।

କରୁଣାଙ୍କ ହାତ ଧରି ଧୀରେ ଧୀରେ ପାଉଛ ଚଢ଼ି ଉପରକୁ ଫେରି ଆସିଲି ।

# ମେଘୁଆ ତାରାମାନେ

**ଅଧ୍ୟାପକ ପ୍ରାଣବନ୍ଧୁ କର**

ରଘୁମାଷ୍ଟ୍ରେ ଆଜ ସକାଳୁ କାହିଁକି ଅଚେତ୍ରକ୍ତ ମାଝାରେ ଉତ୍ତର୍ଯ୍ୟକ୍ତ—ଗାଁଟା ସାରା ଲୋକେ କୁହାକୁହି ହଉଛନ୍ତି—କଅଣ ହେଲା ?···ଦାଣ୍ଡ କବାଟ ବନ୍ଦ—ଭିତରେ କଣ୍ଠ ମାଷ୍ଟ୍ରେ—ତାଙ୍କ ଉପରେ ଗାଳିବୃଷ୍ଟି ।···

ଗାଁବାଲାଙ୍କ ମୁହଁରେ ଚିନ୍ତାକୁଳତା—ଏଥର ଯଦି ରଘୁ ମାଷ୍ଟ୍ରଙ୍କର ରକ୍ତଚାପ କମିଯାଏ ନା, ତେବେ ଗଲା—ଆଉ ବଞ୍ଚିବେନି—ବଡ଼ ବଡ଼ ଡାକ୍ତରମାନେ କହୁଛନ୍ତି ଏଥର ଷ୍ଟ୍ରୋକ୍ ହେଲା ମାନେ ରଘୁମାଷ୍ଟ୍ରଙ୍କୁ ବଞ୍ଚେଇବା କାଠିକର ପାଠ—କାଠିକର ପାଠ କଅଣ ? ଆଉ ତ ବଞ୍ଚିବେନି—ଏ ଖଣ୍ଡମଣ୍ଡଳର ଘାପଟା ଧପ୍‌କରି ଲିଭିଯିବ ।

ଏ କଥା ଶୁଣିବେଳୁ ବେଳକୁ ଏଡ଼େ ବଡ଼ ଗାଁଟାର ପିଲାଛୁଆଙ୍କଠୁଁ ଆରମ୍ଭ କରି ଅଶୀ ନବେ ବର୍ଷର ବୁଢ଼ାଯାଏଁ ସଭିଙ୍କ ମୁହଁ ପାଉଁଶିଆ ପଡ଼ିଯାଉଛି ।

ରଘୁମାଷ୍ଟ୍ରେ, ରଘୁମାଷ୍ଟ୍ରେ, ରଘୁମାଷ୍ଟ୍ରେ···ଗାଁଟାର ଖାଇପିଇ ଆଉ କିଛି ଚିନ୍ତା ନାହିଁ···ଖାଲି ସେଇ ଗୋଟାଏ ଲୋକ ରଘୁମାଷ୍ଟ୍ରଙ୍କ ଚିନ୍ତା··· ତାଙ୍କର ଠିକଏ ଶର୍ଦ୍ଦିକାଶ ହେଲା ତ ହନୁ ଧଳ ସାମନ୍ତଙ୍କ ଏକମାତ୍ର ଟାକ୍‌ସି ତାଙ୍କୁ ଧରି ଛୁଟିବ କଟକ ବଡ଼ ଡାକ୍ତରଖାନାକୁ···ଗାଁବାଲାଙ୍କର ରଘୁମାଷ୍ଟ୍ରଙ୍କ ପେଇଁ ଟଙ୍କା ଖର୍ଚ୍ଚ କରିବାକୁ ପରବାଏ ନାଇଁ···ଲାଗୁ ଯେତେ ଟଙ୍କା ଲାଗିବ···ରଘୁମାଷ୍ଟ୍ରେ ଆମର ବଞ୍ଚିଥାନ୍ତୁ···

ତାଙ୍କୁ ଟାକ୍‌ସିରେ ବସେଇ କଟକ ଡାକ୍ତରଖାନା ନେଲାବେଳେ ରଘୁମାଷ୍ଟ୍ରେ ଗାଁବାଲାଙ୍କୁ କେତେ ଅନୁନୟ ବିନୟ ହୋଇ କହନ୍ତି— "ଆରେ, ଏ ଚଉରାଶୀ ବର୍ଷର ବୁଢ଼ାହାଡ଼ାଟାକୁ ବଞ୍ଚେଇ ରଖି ତମର ଲାଭ କଅଣ କହିଲ ? ମୁଁ କଅଣ ତମ୍ଭାପାତିଆରେ ମୁଣ୍ଡ ବାନ୍ଧି ଆସିଛି ?"

କିନ୍ତୁ ତାଙ୍କର ଏ 'ଅରଣ୍ୟରୋଦନ'କୁ କାନ ଦେଉଚି କିଏ ?

ସେଦିନ ସନିଆ ହଳବଳଦ ନେଇ ବିଲକୁ ଯାଉ ଯାଉ ମନ୍ତ୍ର ଜପିଲା ଭଳି କଅଣଗୁଡ଼ାଏ ଗୁଣ୍ଡୁ ଗୁଣ୍ଡୁ ହୋଇ କହିଯାଉଥିଲା··ଦାଣ୍ଡପିଣ୍ଡାରେ ବସି ଦାନ୍ତ ଘଷୁଥିଲି—ହସି ହସି ପଚାରିଲି—"କିରେ ସନିଆ, କଅଣ ଏମିତି ଗୁଣ୍ଡୁ ଗୁଣ୍ଡୁ ହଉଚୁ ?"

ସନିଆ ଟିକିଏ ଅଟକି ଯାଇ ମୁରୁକି ହସିଦେଇ କହିଲା—

"କିଛିନାରେ ସା'ନ୍ତେ—ଆଜ୍ଞା ଜପୁଥିଲି ଗୋଟେ ମନ୍ତ୍ର ।"

"କି ମନ୍ତ୍ରରେ ? କଅଣ ଦୀକ୍ଷା ନେଇଚୁ କୋଉ ଗୁରୁଙ୍କଠୁଁ ?" ମୁଁ ପଚାରିଲି···

ସନିଆ କହିଲା—"ନାଇଁ ସା'ନ୍ତେ, ଦୀକ୍ଷା ନେଇନି···ମୁଁ ଜପୁଥିଲି 'ରଘୁମାଷ୍ଟ୍ରେ, ରଘୁମାଷ୍ଟ୍ରେ, ରଘୁମାଷ୍ଟ୍ରେ···' ଯୋଉଦିନ ସା'ନ୍ତେ ବିଲକୁ ଗଲାବେଳେ ରଘୁମାଷ୍ଟ୍ରଙ୍କ ଦର୍ଶନ ମିଳିଯାଏ ସେଦିନ ତାଙ୍କ ନାଁ ଜପି ଜପି ବିଲକୁ ଗଲେ ଭଲ ଫଳ ହୁଏ ।"

"କି ଭଲ ଫଳ ହୁଏ ଟିକିଏ ଶୁଣେ ?" କୌତୂହଳିତ ହୋଇ ପଚାରିଲି···

"ସେଦିନ କ୍ଷେତ ମାଟି ଓଦା ହୋଇ ଯାଇଥିବ ବର୍ଷାପାଣିରେ··· ନ ହେଲେ ଏ ହଡ଼ାବଳଦ ଦି'ଟା ସେଦିନ କାହିଁକି ବେଶି ଫୁର୍ତ୍ତିରେ ଲଙ୍ଗଳଟାକୁ ଭିଡ଼ିନେବେ କ୍ଷେତ ଉପରେ··କିଛି ନ ହେଲେ ମୁଁ କେଉଁକିଉପାସ ଭୁଲି ହଳ କରି ଚାଲିଥିବି···"

ପ୍ରଥମେ ପ୍ରାଇମେରି, ପରେ ମାଇନର ସ୍କୁଲର ବହୁ ବର୍ଷ ଆଗରୁ ଅବସରପ୍ରାପ୍ତ ଏଇ ରଘୁମାଷ୍ଟ୍ରେ···ଏ ଗାଁର ଦେବତା, ତାଙ୍କ ନାଁକୁ ମନ୍ତ୍ର ଭଳି ଜପ କଲେ ପୁଣି ଭଲ ଫଳ ହୁଏ··ସେ ନାଁଟାରେ ଏତେ ଯାଦୁ !

(ଏଇ ଗାଁର ପିଲା ମୁଁ···ମୁଁ ବି ଅଧ୍ୟାପକ ହୋଇ ଶତାବ୍ଦୀର କଲି—ମତେ ନେଇ ଗାଁ ଗର୍ବ କରେ—ଦେଖ ହୋ, ଯୋଉ ମନ୍ତ୍ରିମଣ୍ଡଳ

ଗାଦିରେ ବସିଲେ ସେଥିରେ ପୁଞ୍ଜାଏ ପାଞ୍ଚୁଟା ମନ୍ତ୍ରୀ ଆମ ବିମଳବାବୁଙ୍କ ଗୁହ ! ଆମେ ତ ନିଜ ଆଖିରେ ଦେଖିବା କଥା କିମିତି ସେମାନେ ଆମ ଗାଁକୁ ସଭା ସମିତିରେ ଆସିଲେ ବିମଳବାବୁଙ୍କ ପାଦ ଛୁଇଁ ପ୍ରଣାମ କରନ୍ତି—

ଅଥଚ ? ଅଥଚ ପୁଣି କଅଣ ? ମୁଁ ତ ରଘୁମାଷ୍ଟ୍ରେ ହେଇ ପାରିଲିନି ? ମୋ ନାଁଟାକୁ କେହି ଜପାମାଳି କରିଚି ଏ ଗାଁରେ.ନା ଏ ଓଡ଼ିଶା ଭୂଇଁରେ ! ମାଇନର ସ୍କୁଲର ଅବସରପ୍ରାପ୍ତ ରଘୁମାଷ୍ଟ୍ରଙ୍କ ପାଖରେ ଠିଆହୋଇ ଆମେରିକା ଇଉରୋପ ଫେରନ୍ତା ମୁଁ ଯେତେବେଳେ ରଘୁମାଷ୍ଟ୍ରଙ୍କ ପାଦ ଛୁଇଁ ପ୍ରଣାମ କରେ, ଆଉ ସଭକ୍ତି ତାଙ୍କ ସହିତ କଥାଭାଷା ହୁଏ, ସେତେବେଳେ ଆମକୁ ବେଢ଼ିଯାଇଥିବା କେତେକ ଗାଁବାଲାଙ୍କ ପରିତୃପ୍ତ ହସ ହସ ଓ ଗର୍ବିତ ଆଖିଗୁଡ଼ା ଚଉରାଶୀ ବର୍ଷର ରଘୁମାଷ୍ଟ୍ରଙ୍କ ମୁହଁ ପ୍ରଦକ୍ଷିଣ କରୁଥାଏ—ମୋ ମୁହଁ ନୁହେଁ ।

ଏତେ ବଡ଼ ଜଣେ ପରଫେସାର୍ ଆଉ ଲେଖକ ଆମ ଏ ଓଡ଼ିଶା ଭୂଇଁର, କିମିତି ମଥା ନୁଆଁଇ ଆମ ରଘୁମାଷ୍ଟ୍ରଙ୍କ ସହିତ କଥାଭାଷା ହେଉଛନ୍ତି ଦେଖ । ଆମେ ତ ଛାର । ରଘୁମାଷ୍ଟ୍ରଙ୍କ ଆଗରେ ଇଏ ବି କିମିତି ବାଧ ଛୁଆଟିଏ ଭଳି ଠିଆ ହେଇଛନ୍ତି ଦେଖ ! ହେବେନି ? ଏଇ ରଘୁମାଷ୍ଟ୍ରଙ୍କ ପାଖରେ ଇଏ ତ ପୁଣି ଖଡ଼ି ଛୁଇଁଥିଲେ !)

ମନେଅଛି ମୋର—ମତେ ସେତେବେଳେ ପାଞ୍ଚ ପୂରି ଛଅ ଚାଲୁଥାଏ—ପଚାଶ ବର୍ଷ ତଳର କଥା । ରଘୁମାଷ୍ଟ୍ରେ ସେତେବେଳେ ସତେଇଶି କି ଅଠେଇଶି ବର୍ଷର ଭେଣ୍ଡିଆ । ବଡ଼ଭୋରରୁ ସ୍କୁଲକୁ ଯିବାବେଳେ ଆମ ଦାଣ୍ଡଦୁଆର ସାମନାରେ ଠିଆହୋଇ ଯେତେବେଳେ ରଡ଼ିଟାଏ ମାରି ଡାକନ୍ତି—'କିରେ ବିମଳ, ବେଳ ହେଇନି ?' ମୋ ଗୁଣ୍ଡିଆ ଥରିଯାଏ । ପ୍ରଥମ ଯୋଉଦିନ ମତେ ରଘୁମାଷ୍ଟ୍ରେ ସ୍କୁଲକୁ ଟାଣି ଟାଣି ନେଲେ, ନାଁ ଲେଖା ପରେ ସେଦିନ କଥା ଭୁଲିନି ମୁଁ—ମୁଁ ଯିବିନି, ହେଲେ ରଘୁମାଷ୍ଟ୍ରେ ଛାଡ଼ିବେନି—ସିଏ ମୋର ଗୋଟାଏ ହାତକୁ ଭିଡ଼ୁଛନ୍ତି ବହୁତ କଅଁ କେଇ ଡାକ ଆଉ ମୁଁ ମୋ ବାଁ ହାତଟାରେ ଆମ

ଦାଣ୍ଡ କବାଟର ଗୋଟାଏ ଫାଳକୁ ଜାବୁଡ଼ି ଧରି ଘର ଭିତରକୁ ପଶିପିବାକୁ ଚେଷ୍ଟା କରୁଛି ଏଣୁ ବନ୍ଧ ଭିତରକୁ ଗୋଟାଏ ଗୋଡ଼ ଆଉ ବାହାରକୁ ଗୋଟାଏ । ବୋଉ ମୋର ଭିତରୁ କହୁଛି—ଛତରା ଟୋକା, ଛ' ବର୍ଷ ହେଲା ଆସି···ପାଠ କଥା ପଢ଼ିବୁ···ଖାଲି ବଲବଣ, ପାହାଡ଼ ବୁଲି ବଣି ଧରିବୁ, ନେଉଳ ଧରିବୁ···ଯା ଇସ୍କୁଲକୁ···ଗଲୁ—ମୁଁ ଦାନ୍ତ ଚିପି ଗର୍ଜି ଗର୍ଜି କହୁଛି—ନା, ଯିବିନି···ରଘୁ ମାଷ୍ଟ୍ରଙ୍କର ଏଇ ଟାଣିବା ଦୃଶ୍ୟଟା ମନେ ପଡ଼ିଗଲେ ମୋର ପିଲାଦିନର ଆଉ ଗୋଟାଏ ଦୃଶ୍ୟ ମନେ ପଡ଼ିଯାଏ ।

ଆମ ଗାଁର ନରି—ମୋଠୁଁ ଦୁ'ଟା ବର୍ଷ ମାତ୍ର ବଡ଼—ସପ୍ତମ ଶ୍ରେଣୀରେ ପଢ଼ୁଥାଏ···ମୁଁ ପଞ୍ଚମରେ । ଅଥଚ ତାର ସାହସ ଅଦ୍ଭୁତ ! ସାପ ମାରିବାରେ ଓସ୍ତାଦ୍—ଗାଁ ଲୋକେ ତାର ସାହସ ଦେଖି ହତବାକ୍ ହୋଇଯାନ୍ତି ! ସେ ସକାଳ ସନ୍ଧ୍ୟାରେ ଝାଡ଼ାଫେରି ଗଲାବେଳେ ତା ହାତରେ ଲୁହାମୁନବସା ଟେଣ୍ଟା ନିଶ୍ଚୟ ଥିବ—ଯଦି ଦେଖିଲା ଉଇ-ହୁଙ୍କା ଗାତ ଭିତରୁ ସାପ ଫଣା ଟେକି ଖେଳୁଛି ନରିର ଅଟକିଆ ଝାଡ଼ା ବନ୍ଦ—ସେ ସେଇଠି ରହିଲା । ଆଉ ନରିର ଟେଣ୍ଟାରେ ସେଦିନ ସାପର ମୃତ୍ୟୁ ସୁନିଶ୍ଚିତ ।

ନରି ଆଜି ବୁଢ଼ା ହେଲାଣି । ରେଳବାଇରେ କାମ କରେ । ବାର୍ଦ୍ଧକ୍ୟ ଓ ଅଭାବ ତାକୁ ନୁଆଁଇ ଦେଲାଣି । ତାକୁ ଯେବେ ଦେଖେ ଓ ତାର ଅସୀମ ସାହସିକତା କଥା ମନେପକାଏ—ନିର୍ଭୀକ ଭାବରେ ସାପ ମାରିବା ତା ଜୀବନ କ୍ଷେତ୍ରରେ ଯେଉଁ ନିର୍ଭୀକତା ଆଣି ଦେଇଛି ସେଥିପାଇଁ ସେ ଆରମ୍ଭରୁ ରେଳବାଇର ଯୋଉ କାମରେ ଥିଲା ସେଇ କାମରେ ବୁଢ଼ା ହେଲାଯାଏଁ ରହିଗଲା—ଜଟଣୀ ଜଂକ୍‌ସନରୁ ବଦଳି ହେଲାନି କି ଉପର ପାହ୍ୟାକୁ ସେ ଉଠି ପାରିଲାନି । କାରଣ ସେ ନିର୍ଭୀକ, ସେ ସ୍ପଷ୍ଟବାଦୀ, ସେ ସଚ୍ଚୋଟ—ଶ୍ରମିକର କ୍ଷେତ୍ରରେ ଅନ୍ୟାୟ ଅବିଚାର ଓ ଦୁର୍ନୀତିର ପ୍ରତିରୋଧ କରିବା ପାଇଁ ସବୁବେଳେ ସେ ଉପର ହାକିମମାନଙ୍କ ସାମନାକୁ ଆଗେଇ ଆସିଛି ।

କିନ୍ତୁ ମୁଁ ?···ସେଇ ନଈ ପାଖିରେ କେତେଥର ତା ସାପମଣ୍ଡ ଦେଖିବାକୁ ଯାଇଚି···କିନ୍ତୁ ଉପରେ ଦୂରରୁ···ନଈ ମତେ ଉପହାସ କରିଚି ହସି ହସି···'ଛେଉଁଆଟା'···ସାରା ଜୀବନ ମୋର ସେଇ ଛେଉଁଆପଣ ପାଇଁ ମୁଁ ଗୋଟାଏ ଖାଲୁ ଅଧ୍ୟାପକ ଭାବରେ କାମ କରି କରି ପେନ୍‌ସାନ୍ ନେଲି···ବ୍ରିଟିଶ ସରକାରଙ୍କ ଅମଳରେ 'ଆପଣଙ୍କର ଅତି ବିଶ୍ୱସ୍ତ ଭୃତ୍ୟ ଧିମଳ ଦାସ' ଆଜି କଂଗ୍ରେସୀ ଶାସନ ଅମଳରେ 'ଆପଣଙ୍କର ବିଶ୍ୱସ୍ତ ବିମଳ ଦାସ ।'

(ବାଃ···ମନେ ପଡ଼ିଲେ ଏବେ ହସମାଡ଼େ···ନିଜକୁ ଧିକ୍‌କାର ହିଏ । ଜଣେ ଶିକ୍ଷାମନ୍ତ୍ରୀଙ୍କୁ ଆମ କଲେଜର ଗୋଟାଏ ସାଂସ୍କୃତିକ କାର୍ଯ୍ୟକ୍ରମରେ ମୁଖ୍ୟ ଅତିଥି ଭାବରେ ନିମନ୍ତ୍ରଣ କରିବାକୁ ଯାଇ ମୁଁ କିମିତି ତାଙ୍କ ଆଗରେ ଠିଆ ହୋଇ କଥା କହିଥିଲି···ବୋଧହୁଏ ଘରର ଜଣେ ଭୃତ୍ୟ ବି ତା ମୁନିବ ପାଖରେ ଏମିତି ଠିଆ ହୋଇ କଥା କହୁ ନ ଥିବ— ତାଙ୍କର ଯୋଗ୍ୟତା ? ସେ ମାଟ୍ରିକ୍ ପାଶ୍‌କରି ଲୋକ···ଖଦଡ଼ ପିନ୍ଧି କିଛି ବର୍ଷ ପାଇଁ ଗୋଟାଏ ହାଇସ୍କୁଲର ସେକ୍ରେଟେରି ଥିଲାବେଳେ ନେତାମାନଙ୍କ ପଛରେ ଗୋଡ଼ାଉଥିଲେ—ସ୍କୁଲ ଟଙ୍କାରେ ନିଜ ପରିବାର ଚଳେଇ ଗାଁରେ ଗୋଟେ କୋଠା ବାଡ଼େଇବା ସାଙ୍ଗେ ସାଙ୍ଗେ 'ଶିକ୍ଷା ପ୍ରସାର' ଭଳି ଜନକଲ୍ୟାଣ କାର୍ଯ୍ୟରେ ଜୀବନ ଉତ୍ସର୍ଗ କରିଥିବାରୁ ଖୁସି ହୋଇ ଲୋକେ ତାଙ୍କୁ ଭୋଟ ଦେଇ ଶିକ୍ଷାମନ୍ତ୍ରୀ କରେଇ ଦେଲେ ।

ଲେଖକର ମନ ବିଦ୍ରୋହ କରିଉଠେ—ହେଲେ ଗୋଟାଏ ଖାଲୁ ଅଧ୍ୟାପକର ମନ-ଜଳ ସେ ବିଦ୍ରୋହ ନିଆଁକୁ ଲିଭେଇ ଦିଏ ।)

ସେଇ ନଈ ପାଖିରେ ଥରେ ମୁଁ ସକାଳୁଆ ଆମ ଗାଁ ଦଣ୍ଡାବାଟେ ଯାଉଥିଲି ଝାଡ଼ାଫେରି···ନଈ ହାତରେ ସେଇ ଚେଣ୍ଢା । ହଠାତ୍ ନଈକୁ ଦଉଡ଼ିଯିବାର ଦେଖିଲି ଉଇହୁଙ୍କା ଆଡ଼କୁ—ତାପରେ ଯାହା ଦେଖିଲି ତା ବିଶ୍ୱାସଯୋଗ୍ୟ ନୁହେଁ—ନଈ ଗୋଟାଏ ନାଗ ସାପର ଲାଞ୍ଜଟାକୁ ତା ବାଁ ହାତରେ ଖୁବ୍ ଜୋର୍‌ରେ ଧରିପକେଇ ହୁଙ୍କା ଗାତ ଭିତରୁ ସାପଟାକୁ ଭିଡ଼ ଆଣିବାକୁ ଚେଷ୍ଟା କରୁଚି ! କିନ୍ତୁ ସାପ ତାର ସମସ୍ତ ଜୋର୍

ଖଟେଇ ଗାଡ଼ ଭିତରେ ପଶିଯିବାକୁ ଚେଷ୍ଟା କରୁଛି । ନରି ଉପରକୁ ଉଡ଼ୁଛି, ସାପ ଗାଡ଼ ଭିତରକୁ ଭିଡ଼ି ହଉଛି···ଗୋଟାଏ ଚମତ୍କାର ଦୃଶ୍ୟ ! ବିପଦ ପରିଧିର ଯଥେଷ୍ଟ ବାହାରେ ରହି ମୁଁ ଏ ଦୃଶ୍ୟକୁ ବେଶ୍ ଉପଭୋଗ କରୁଛି—ପାଖ ଏକ ଘଣ୍ଟା ଯୁଦ୍ଧ ପରେ ନରି ଜିତିଲା । ସାପଟାକୁ ଗୋଟାଏ ଝିଙ୍କାରେ ଉଡ଼ିଆଣି ତାକୁ ବାଁ ହାତରେ ବୁଲେଇ ବୁଲେଇ ଗୋଟାଏ ପଥର ଦେହରେ ପିଟିଦେଲା ।

ମୋ ପିଲାଦିନର ସ୍ୱପ୍ନେ ନରି ପାଖରେ ମୋ ମୁଣ୍ଡ ସେଦିନ ନଇଁ ଯାଇଥିଲା ବିସ୍ମୟରେ···ଆଉ ଆଜି ଏଇ ବୁଢ଼ା ନରି ପାଖରେ ମୋ ମୁଣ୍ଡ ନଇଁଯାଏ ସମ୍ଭ୍ରମରେ···

ରଘୁମାଷ୍ଟ୍ରେ ମତେ ଠିକ୍ ସେମିତି ଝିଙ୍କି ନେଇ ବଡ଼୍ ଗାଁ ଦାଣ୍ଡରେ ଚଲେଇ ଚଲେଇ ସ୍କୁଲକୁ ନେଇ ନ ଥିଲେ ବୋଧହୁଏ ମୋର ବିଦ୍ୟାଦାନ ଭାଗ୍ୟ ନ ଥାନ୍ତା ।

ସେଇ ରଘୁମାଷ୍ଟ୍ରେ ଆଜି କାହିଁକି ଏତେ ଉତ୍ତେଜିତ ! ମୋ ପାଖେ ଗାଁଟା ସାରା ଲୋକ ଆସି ହାଜର—"ଆଜ୍ଞା ସଇଲ—ରଘୁମାଷ୍ଟ୍ରେ ଆଜି ସ୍କୁଲରେ ଘର କମ୍ପେଉଛନ୍ତି—ଭିତରେ ହେଡ଼ମାଷ୍ଟ୍ରେ···ତାଙ୍କ ଉପରେ ଗାଳି ବୃଷ୍ଟି ଚାଲିଛି···ବୁଢ଼ାଙ୍କ ମୁଣ୍ଡକୁ ଯଦି ରକ୍ତ ଚଢ଼ିଯିବ ତେବେ ତାଙ୍କୁ ଆଉ ବଞ୍ଚେଇ ହବନି···ଏ ଗାଁଟା ଅନ୍ଧାର ହୋଇଯିବ—"

ପଚାରିଲି—"କଥା କଅଣ ?" ଗାଁବାଲାଏ କାରଣ କିଛି କହି ପାରିଲେନି···

ଗଲି···ଆଉଜା ହୋଇଥିବା କବାଟ ମେଲେଇ ରଘୁମାଷ୍ଟ୍ରଙ୍କ ଦାଣ୍ଡଘରେ ପଶିଲି···ହେଡ଼ମାଷ୍ଟର ପାଳକଣ୍ଠ ମୁଣ୍ଡପୋଡ଼ି ଛିଡ଼ା ହୋଇଛନ୍ତି, ଆଉ ରଘୁମାଷ୍ଟ୍ରେ ଗର୍ଜନ କରି ଚାଲିଛନ୍ତି···"ନରାଧି···ପାଷାଣ୍ଡ···ତୁ ପ୍ରଧାନ ଶିକ୍ଷକ ହବାର ଯୋଗ୍ୟ ?···ହଇରେ, ତତେ ହାତରୁ ଖର୍ଚ୍ଚ କରି ବି.ଏ., ବି.ଇଡ଼. ପାଶ୍ କରେଇଲି···ଦାଣ୍ଡରେ ଭିକ ମାଗି ବୁଲୁଥାନ୍ତୁ, ହାଇସ୍କୁଲର ଏତେ ବଡ଼ ସୁନାମକୁ ତୁ ନଷ୍ଟ କରିଦେଲୁ ? ଦୁ' ହଜାର ଟଙ୍କା ତୋଷରପାତ କରିଦେଲୁ ମାସ ମାସ ଛ'ଟା

ହେଡ଼୍‌ମାଷ୍ଟ୍ର ହେଉଛୁ କି ନାହିଁ । ଛି, ଛି ଛି ଛି ଛି···ଛୁଆଗୁଡ଼ାକ ଏକଥା ଜାଣିଲେ ଭଲେ କଅଣ କହିବେ ? ତୁ ମୋ ମୁହଁରେ କାଳି ବୋଳିଦେଲୁ ରେ ଚଣ୍ଡାଳ ! କାହିଁ ସେ ସେନ୍ଟେଟେଶ୍ୱ ବାପଡ଼ା କୁଆଡ଼େ ଗଲା ? ରାଜନୀତି କରୁଚ ନାହିଁ ? ଆଜି ଏ ଦଳ ତ କାଲି ସେ ଦଳ—ଯିଏ କ୍ଷମତାକୁ ଆସିଲା ତାର ଦଳରେ ମିଶି ଯାଉଚ···ତାଙ୍କ ଗୋଡ଼ାଣିଆ ହେଇ ଭାବୁଚ ମନ୍ତ୍ରୀ ହବ···ସ୍କୁଲଟା ଇୟାଡ଼େ ରସାତଳକୁ ଗଲାଣି !'' ଫଣୀ ଭଲ ତାଙ୍କର ଏ ଫଁ ଫଁ ଆଗରେ ଠିଆ ହବାକୁ ଡର ମାଡ଼ିଲା ମତେ—ତଥାପି ସାହସ ବାନ୍ଧି, ହାତଯୋଡ଼ି ଅନୁନୟ ସ୍ୱରରେ କହିଲି—''ସାର୍‌ ! ଆପଣ ବ୍ୟସ୍ତ ହୁଅନ୍ତୁନି, ମୁଁ ବୁଝିବି ସେ କଥା···ଆପଣ ଚାଲନ୍ତୁ ଭିତରକୁ··· ବିଶ୍ରାମ କରିବେ ଚାଲନ୍ତୁ···ଏ ବୟସରେ, ପୁଣି ରକ୍ତଚାପ ବେମାରରେ ଆଉ ଏତେ ବେଶି ସ୍କୁଲ କଥା ଚିନ୍ତା କରନ୍ତୁନି ଆପଣ ।''

ରଘୁମାଷ୍ଟ୍ରଙ୍କ ରାଗଟା ହଠାତ୍ ମୋ ଉପରକୁ ବଦଳି ହୋଇ ଆସିଲା ।

''କଅଣ କହିଲୁ ବିମଳ ?···ଆଉ ସ୍କୁଲ ଚିନ୍ତା କରିବିନି ?···ଆଉ କି ଚିନ୍ତା କରିବି ?''

ଅତି ବିନମ୍ର ଭାବରେ କହିଲି—''ଆପଣ ଏ ସବୁ ମାୟାରେ ଛନ୍ଦି ନ ହେଇ···।'' ·

ମୋ କଥା ନ ସରୁଣୁ ରଘୁମାଷ୍ଟ୍ରେ ଗର୍ଜିଉଠି କହିଲେ, ''ଜପତପ କରିବି ? ପୂଜାରେ ବସି ଚକାଡୋଳାର ଭଜନ କରିବି ? ମତେ ସ୍ୱର୍ଗକୁ ଯିବାପାଇଁ ବାଟ ଦେଖେଇବାକୁ ଇଚ୍ଛା ଥିଲା ଯେବେ, ଏ ସ୍କୁଲର ପ୍ରେସିଡେଣ୍ଟ ହବାକୁ ଅରାଜି ହେଲୁ କାହିଁକି ? ପେନ୍‌ସାନ୍ ନେଇ ତ ବର୍ଷେ ହେଲା ସହରରେ ବସିଚୁ···ଗାଁ କଥା ଚିକିଏ ଭାବିଲୁଣି ?''

ଡରିଲା ଗଳାରେ କହିଲି—''ସାର୍, ମୁଁ ତ ମୋ ଲେଖା-ଲେଖିରେ··· ।''

''ହଁ ହଁ, ମୁଁ ଜାଣେ ତୁ ସେୟା କହିବୁ···ସହରରେ ଖାଲି ଧୋବଧାଉଳିଆଙ୍କ ଜୀବନ ଉପରେ ଗପ ନାଟକ ଲେଖି ଗୋଟାକୁ ଗୋଟା

ସାହିତ୍ୟ ପୁରସ୍କାର ଗୋଟାଏ଼ଥା···ଆଜି ଏ ଗାଁ ଲୋକଗୁଡ଼ା ମଣିଷ ନୁହନ୍ତି···ତାଙ୍କ ଜୀବନକୁ ନେଇ ସାହିତ୍ୟ ଗଢ଼ାଯାଇ ପାରିବନ୍ତ ? ମୁଣ୍ଡପୋତି ଚୁପ୍ ରହିଲି···ଏତେ ଖାଣ୍ଟି ଅଭିଯୋଗର କିଛି ଉତ୍ତର ନ ଥିଲା···ରଘୁମାଷ୍ଟ୍ରେ ବି ଚୁପ୍ ରହିଯାଇ କଅଣ ଚିମିତି ଭାବିଲେ କିଛି ସମୟ ପାଇଁ···ଘର ଭିତରେ ଗୋଟାଏ ଅଶାନ୍ତିସ୍ପର୍ଶିଆ ଶୂନ୍ୟତା ଖେଳିଗଲା—

ତା ପରେ ଅନୁଭବ କଲି ମୋ କାନ୍ଧ ଉପରେ ଗୋଟିଏ ଅତି କଅଁଳିଆ ହାତର ସ୍ପର୍ଶ···ଗୋଟିଏ ଅଶ୍ରୁରୁଦ୍ଧ ସସ୍ନେହ କଣ୍ଠସ୍ୱର— "ହଇରେ ବିମଳ, ମଲାପାଏଁ ବି ବାପ କଅଣ ତା ବୁଢ଼ା ପୁଅକୁ ଶାସନ କରିବାକୁ ଛାଡ଼େ ? କାହିଁକି ଛାଡ଼େନି···ସ୍ନେହ ଯୋଉଠି ଯେତେ ବେଶି ଆସକ୍ତି ସେଇଠି ସେତିକି ବେଶି । ଏ ସ୍କୁଲର ଅଧିକରୁ ଅଧିକ ଉନ୍ନତି କଥା ଚିନ୍ତା କରିବା ଛାଡ଼ି ଦେଇ ତୋକୋଡୋନାକୁ ଧନଗତି ଭଜିଲେ ମତେ କଅଣ ମୁକ୍ତି ମିଳିବ ? ଏଇ ସ୍କୁଲଟା ଯେତେବେଳେ ମାଇନର୍ ଥିଲା ସେଠୁ ତୁ ଓ ତୋ ଭଳି କେତେ ହୀରା ବାହାରି ଏ ଦେଶଟାର ମୁହଁ ଉଜ୍ଜ୍ୱଳ କରିଛନ୍ତି ଜାଣିଛୁ ତ ! ମୋର ପଇଁତିରିଶ ବେଳେ ତୋ ମାଉସୀଙ୍କ କାଳ ହେଲା···କିଛି ନୈଁଜେରି ନ ଲଗେଇ ସେ ମତେ ଛାଡ଼ି ଚାଲିଗଲେ— ତା ପରେ ଆଉ ସଂସାର କଲିନି କାହିଁକି ?···କିଏ ମତେ ବାଧା ଦେଉଥିଲା ? ଅଥଚ ଏ କଣ୍ଢିଆଟା, ମାସ ଛ'ଟା ହେଡ୍‌ମାଷ୍ଟର ହେଇଚି କି ନାହିଁ ସ୍କୁଲ ଟଙ୍କାଗୁଡ଼ା ଖାଇଗଲା ! ତୁ ଭାବିପାରୁଚୁ ମୋ ହାତଗଢ଼ା ସ୍କୁଲରେ ଏମିତି ଅସାଧୁ ଲୋକ ରହିଲେ ମୋ ମନର ଅବସ୍ଥା କଅଣ ହବ ?"

କହିଲି—"ସବୁ ବୁଝୁଚି ସାର୍—କିଛି ଟଙ୍କା ଖାଇଗଲା ବୋଲି କଅଣ ସ୍କୁଲର ସୁନାମରେ ଆଞ୍ଚ୍ ଆସିଗଲା ?"

ରଘୁମାଷ୍ଟ୍ରେ କହିଲେ—"ଆସିଲାନି ?···କି ଆଦର୍ଶ ଦେଖାଇଲେ ଏଗୁଡ଼ା ମୋ ସ୍କୁଲର ଶିକ୍ଷକ ହେଇ ?"

ମାନକଣ୍ଠ ଅତି କ୍ଷୀଣ ଅନୁତପ୍ତ କଣ୍ଠରେ କହିଲା—

"ସାର୍, ମତେ କ୍ଷମା କରନ୍ତୁ···ମତେ···"

ପୁଣି ଗର୍ଜିଉଠି ରଘୁମାଷ୍ଟ୍ରେ କହିଲେ—"କଅଣ କହିଲୁ, କଅଣ କହିଲୁ ରେ କଣ୍ଟିଆ ! ତତେ କ୍ଷମା ଦେବି···? ନା ତତେ ଢ଼ଆନ ଫାଟକ ଦେଖାଇବି ? ତୋ ଭଳି ନାର୍କିକକୁ କ୍ଷମା ?···ମୋ ଆଖି ଆଗରୁ ଗ୍ଳଲଯା···ଗଲୁ ? ମୋ ଇଙ୍ଗିତରେ ମାଳକଣ୍ଟୁ ମୁଣ୍ଡ ପୋଡି ପୋଡି ବାହାରକୁ ଗ୍ଳଲଗଲ·····

× × × ×

ରଘୁମାଷ୍ଟ୍ରେ ଯେଉଁକ ଘଣ୍ଟରେ ବଞ୍ଚଣାରେ କଅଣ ନିଦରେ ଶୋଇଥିଲେ ନା ଅନ୍ଧାର ଘରଟାର ଗ୍ଳଳଆଡ଼େ ବଲବଲ କରି ଗ୍ଳହିଁ ସ୍ଥିବୁଥିଲେ···

କଣ୍ଟିଆ ଶିକ୍ଷକ ହେଲେ ବି ସେଇ ମଣିଷ ତ ? ଗାଣ୍ଡେ ପିଲାଛୁଆ ଜନ୍ମ କରିଚ···ଅଭାବର ତାଡ଼ନା ସହି ନ ପାରି ଉନ୍ନୟନ ପାଣ୍ଠିରେ ହାତ ପକେଇ ଦେଇଚ···କହିଲା ଭରଣା କରିଦବ । କୋଉବାଟେ ଦବ ? କହୁଚ କଅଣ ନା ତା'ର ପାଞ୍ଚ ମାସର ଦରମା ଟଙ୍କାଟା ପାଣ୍ଠିରେ ଭରଣା କରିଦବ···ଆଉ ଇଏଣ୍ଟେ ପିଲାଛୁଆଗୁଡ଼ା ମରିବେ ! ଆଗରୁ ତେବେ ମାରିଦେଲୁନି କାହିଁକି ? ଟଙ୍କା ତୋଷରପାତ୍ କରିବା କି ଦରକାର ଥିଲା ?···

ଏଁ ! ତୋଷରପାତ୍ ! କିଏ ତୋଷରପାତ୍ ନ କରୁଚ ! ତଳଠୁଁ ଉପରଯାଏଁ ଏ ଦେଶଟାରେ ଦୁର୍ନୀତି ଭର୍ତ୍ତି ! ମୁଁ ? ମୁଁ ? ମୁଁ ନିଜେ ସଚ୍ଚୋଟ ତ ? ମୁଁ କେବେ ଦୁର୍ନୀତି କରିନ ?···ଏଇ ଉନ୍ନୟନ ପାଣ୍ଠି··· ଟଙ୍କାଟା ପାଶ୍ ବହିରେ ନ ଜମେଇ କଣ୍ଟିଆର ମାଟ୍ରିକ୍ ପରୀକ୍ଷା ଫିସ୍ ପଇଁଗ୍ଳଳିଶ ଟଙ୍କା କିଏ ଦେଇଥିଲା ? ମୋ ଘରୁ ମୁଁ ଦେଇଥିଲି ? ପହିଲାଯାଏଁ ଯୋଉ ପଚଶ ଦିନ ଟଙ୍କାଟା ପାଶ୍ ବହିରେ ନ ଜମେଇ ହାତରେ ରଖିଲି କମ୍ ପଡ଼ୁଥିବା ପଇଁଗ୍ଳଳିଶ ଟଙ୍କାଟା ମୋ ଦରମା ଟଙ୍କାରୁ ଭରଣା ନ କଲାଯାଏଁ ସେଇଟା ଦୁର୍ନୀତି ନୁହେଁ···ସୁମାନ୍ତ ? ପରୋପକାର···? ଅସ୍ଥାୟୀ ତୋଷରପାତ୍ ନୁହେଁ ?···ସ୍କୁଲଟା ପ୍ରାଇଭେଟ ଥିଲାବେଳେ ଯୋଉ ସହାସ ଦାସ ବିନା ଛୁଟି ଦରଖାସ୍ତରେ ଦଶ ଦିନ

ଘରେ ରହିଗଲା ଅଷ୍ଟପ୍ରହରୀ କୀର୍ତ୍ତନରେ ବଭୋଳ ହୋଇ, ତାକୁ ଘଣ୍ଟ ଘୋଡ଼େଇ ଦେଇଥିଲା କିଏ ? ମୁଁ ନା ? କିନ୍ତୁ କାହିଁକି ? ସିଏ ଭଲ ମାଷ୍ଟ୍ର ବୋଲି ? ଏଇଟା ଅନ୍ୟାୟ ନୁହେଁ, ପକ୍ଷପାତ ବର୍ତ୍ତର ନୁହେଁ ? ଏମିତି କାହିଁକି କରିଥିଲି ? ବିବାହ ପୂର୍ବରୁ ତା'ର ସୁନ୍ଦରୀ ଯୁବତୀ ଭଉଣୀ ରାଧା ପ୍ରତି ମୋର ଗୋଟାଏ ସୁପ୍ତ ଆସକ୍ତି ଆସି ନ ଥିଲା ?)

ସନାତନ ମାଷ୍ଟର ଯୋଉଦିନ ବାହାଘର ହେଲା ସେଦିନ ପ୍ରାଇମେରୀ ସ୍କୁଲଟାକୁ ମୁଁ କାହିଁକି ଛୁଟି କରିଦେଇଥିଲି ? ସ୍କୁଲଟାକୁ ଗାଁରେ ମୁଁ ବସେଇଥିଲି···ସରକାରୀ ମଞ୍ଜୁରି ମୁଁ ଅଣେଇଥିଲି······ ସେଇଥିପାଇଁ—

· ଶିତଆ ଅଣ୍ଡା ଗଡ଼ରେ ବ ରଘୁମାଷ୍ଟ୍ରଙ୍କ ଦେହରୁ ଝାଳ ଗମ୍ ଗମ୍ ହୋଇ ବୋହିଗଲା ।···ସେ ଚିତ୍କାର କରି କହିଉଠିଲେ, "ହଁ, ହଁ, ହଁ, ଏଗୁଡ଼ା ସବୁ ଦୁର୍ନୀତି, ଅନ୍ୟାୟ···କେହି ଜାଣିପାରେ ନାହାନ୍ତି ବୋଲି ସେଗୁଡ଼ାକ ତୁଚ୍ଛ କଥା ନୁହେଁ···ମୁଁ ବ ଦୁର୍ବଳ ଥିଲି, ଅସାଧୁ ଥିଲି···ହିଁ ହିଁ ହିଁ ।"

ରଘୁମାଷ୍ଟ୍ରଙ୍କର କରୁଣ ଆର୍ତ୍ତ ଚିତ୍କାରରେ ସେଦିନର ନିଥର ଶୀତ ରାତି ଥରି ଉଠିଥିଲା···ସାଇପଡ଼ିଶା ଦାଣ୍ଡିକବାଟ ଫିଟେଇ ପଦାକୁ ବାହାରି ଆସିଥିଲେ···କାନ ପାରିଥିଲେ···କିନ୍ତୁ ଆଉ କୌଣସି ଚିତ୍କାର ଶୁଣିବାକୁ ପାଇ ନ ଥିଲେ—

ସକାଳ ହେଲା—ହଠାତ୍ ମୋ ନିଦଟା ଭାଙ୍ଗିଗଲା କାହାର କାନ୍ଦ କାନ୍ଦ ଡାକରେ···

"ଆଜ୍ଞା ସବୁ ସରିଗଲା···ରଘୁମାଷ୍ଟ୍ରଙ୍କର ଅଣଗୁଣ ବୋହିଲାଣି··· ଠାରରେ ଆପଣଙ୍କୁ ଯିବାକୁ କହିଲେ ।"

× × × ×

ରଘୁମାଷ୍ଟ୍ରେ ଆଖି ବୁଜି ଶୋଇଥିଲେ । ନିସ୍ତେଜ, ନିର୍ବେଦ···

ମତେ ଡାକିବାକୁ ଯାଇଥିବା ଘନ ମହାନ୍ତ ମାଷ୍ଟ୍ରଙ୍କ ପାଖକୁ ଯାଇ ଧୀର ଗଳାରେ କହିଲେ ତାଙ୍କ କାନ ପାଖରେ "ବିମଳ ସା'ନ୍ତେ ଆଇଲେଣି ଆଜ୍ଞା"—ମୁଁ ତାଙ୍କ ମୁଣ୍ଡ ପାଖେ ଯାଇଁ ବସିଲି । ରଘୁମାଷ୍ଟ୍ରେ ମୋ ଆଡ଼େଚାହିଁଲେ···ଥରିଲା ହାତଟାରେ ମୁଣ୍ଡତଳ ତକିଆ ଆଡ଼େ ଠାରି କଅଣ କହିଲେ ମୁଁ ସ୍ପଷ୍ଟ ବୁଝିପାରିନି···ମୋ ମୁଣ୍ଡ ଆଉଁସି ଦେଲେ । ଘରେ ଖୁନ୍ଦି ହୋଇ ଯାଇଥିବା ଗାଁ ଲୋକଙ୍କ ଆଡ଼େ ଚାହିଁଲେ । ସବୁରି ଆଖିରେ ଲୁହ···ତାଙ୍କ ଆଖିରୁ ବି ଦି'ଟୋପା ଲୁହ ଗଡ଼ିପଡ଼ିଲା—ଓଠରେ କ୍ଷଣକ ପାଇଁ ଟିକିଏ ହସ ସଞ୍ଚରି ଗଲା ।

ଠିକ୍ ସେତିକିବେଳେ ନୀଳକଣ୍ଠ ଆସି ରଘୁମାଷ୍ଟ୍ରଙ୍କ ଆଗରେ ଠିଆ ହେଲା—ମାଷ୍ଟ୍ରେ ତା ଆଡ଼େ ଅପଲକ ଆଖିରେ ଚାହିଁଲେ···ତାଙ୍କ ଆଖିରେ କୌଣସି ଭାଷା ନ ଥିଲା···

ତାପରେ ଉଠିଲା ହିକ୍କା ପରେ ହିକ୍କା···ରଘୁମାଷ୍ଟ୍ରେ ଘଟ ଛାଡ଼ିଲେ—କିନ୍ତୁ ଅପଲକ ଆଖି ଦି'ଟା ନୀଳକଣ୍ଠ ମୁହଁରେ ସ୍ଥିର ହୋଇ ରହିଗଲା ପରି ଜଣାଗଲା । ରୁଦ୍ଧ କଣ୍ଠରେ ନୀଳକଣ୍ଠ କହିଲା—"ସାର୍, ମତେ ଆପଣ କ୍ଷମା ଦେଇ ଗଲେନି ?"

ମୁଁ ରଘୁମାଷ୍ଟ୍ରଙ୍କ ମୁଣ୍ଡତଳ ତକିଆଟାକୁ ଅତି ଧୀରେ ସାମାନ୍ୟ ଉଠେଇ ତା ତଳେ ହାତ ପୂରେଇଲି । ବାହାରି କଲି ଗୋଟିଏ ଲମ୍ବା ମାଟିଆ ମୁଦା ଲଫାପା···ତାଙ୍କର ଥରିଲା ହାତରେ ରଘୁମାଷ୍ଟ୍ରେ ଲଫାପା ଉପରେ ଯାହା ଲେଖିଥିଲେ ପଢ଼ିଲି—ତାପରେ ନୀଳକଣ୍ଠ ଆଡ଼କୁ ନ ଚାହିଁ ବଢ଼େଇ ଦେଲି ସେଇଟା ତା ହାତକୁ ।

ଥର ଥର ହାତରେ ନୀଳକଣ୍ଠ ପଢ଼ିଲା—

"ବିମଳ,

ଲଫାପା ଭିତରେ ଦି' ହଜାର ରହିଲା । ସ୍କୁଲ ଉନ୍ନୟନ ପାଣ୍ଠିରେ ଭରଣା କରିଦେବୁ···ଗାଁବାଲା ଯେମିତି କେହି କିଛି ଜାଣିବେନି··· କଣ୍ଟିଆଟାକୁ କହିବୁ ସ୍କୁଲଟାର ଆଉ ବଦନାମ କରିବନି···ସେଇଟା ଅତି

ଅଭାବ—ଅଭାବରୁ ଏମିତି ବାଷ୍ପ ଖାଇଦେଲା—ନ ହେଲେ ପିଲାଟା··· ହଇରେ, ଏ ଦେଶଟା କଅଣ ଉଧେଇବ କେବେହେଲେ ଏ ମାଷ୍ଟ୍ରଗୁଡ଼ାଙ୍କୁ ଏମିତି ଅଭାବରେ ରଖି ?···ସାହିତ୍ୟ ସୃଷ୍ଟି କରି ଏତେ ତ ନାଁ କମେଇଲୁ··ଦେଶର ଏଇ ମାଷ୍ଟ୍ର ଆଉ ତାଙ୍କର ଭଳି ହତଭାଗାଗୁଡ଼ାଙ୍କ ପେଇଁ କଲମ ଧ ଏଥର ।"

'ରଘୁ'

ମାଳକଣ୍ଠ ଆଖିରୁ ଧାରଁ ଧାର ଲୁହ ବୋହିଗଲା·····ସେ ଗୁହିଁଲ ରଘୁମାଷ୍ଟ୍ରଙ୍କ ମୁହଁକୁ । ସେ ତା'ର ଆଡ଼କୁ ଗୁହିଁଛନ୍ତି ଯେମିତି·····ଆଉ କହୁଛନ୍ତି, "ତଥାପି ତତେ ସାଧୁ, ସଚ୍ଚୋଟ ଆଉ ନର୍ମଳ ଚରିତ୍ରର ହବାକୁ ପଡ଼ିବ·····ଅସାଧୁ ହବାକୁ ଇଚ୍ଛା ଥିଲି ଯଦି, କିଏ କହୁଥିଲା ତତେ ଏ ଦରିଦ୍ର ମାଷ୍ଟ୍ର ବୃତ୍ତି ଧରିବାକୁ ?"

× × × ×

ବହୁତ ସକାଳ ହେଲା·····ବହୁତ ରାତି ହେଲା·····ବହୁତ ଚନ୍ଦ୍ର ସୂର୍ଯ୍ୟ ତାରା ଉଇଁଲେ··ଗୁଆଏ ସମୟ ବୋହିଗଲା ରଘୁମାଷ୍ଟ୍ରେ ଆଖି ବୁଜିଲା ଦିନୁ ।

ଭୋରରୁ ଦିନେ ଦାଣ୍ଡପିଣ୍ଡାରେ ବସି ଦାନ୍ତ ଘଷୁଥିଲି । ଦେଖିଲି, ବୁଢ଼ା ସନିଆ ହଳବଳଦ ଧରି ବିଲକୁ ଯାଉଚି···ଗୁଣ୍ଡୁ ଗୁଣ୍ଡୁ ହୋଇ କଅଣ ଗୁଡ଼ାଏ କହିଯାଉଚି ମନ୍ତ୍ର ଜପିଲା ଭଳି । ପଚାରିଲି "କିରେ ସନିଆ·· ·· ଏବେ କି ମନ୍ତ୍ର ଜପୁଚୁ ?"

ସନିଆ ମୁରୁକି ହସି ଠିଆ ହୋଇ ପଡ଼ିଲା ।···ଆଖି ଛଳ ଛଳ କରି କହିଲା, "ଯୋଉ ମନ୍ତ୍ର ଜପୁଥିଲେ ସା'ନ୍ତେ । ହାଡ଼ମାଉଁସର ମୁହଁଟା ସିନା ଲୁଚିଗଲା ଏ ଗାଁରୁ··ହେଲେ ମନ ଭିତରୁ କିଭିଚି କେତେବେ ?"

# ମିଥ୍ୟାଧିକ-ସତ୍ୟାଧିକ

**ଅଧ୍ୟାପକ ମହାପାତ୍ର ନୀଳମଣି ସାହୁ**

ଚୌଧୁରୀ ଶ୍ରୀ ରାମନାଥ ଦାସ ଏ ବର୍ଷ ଶ୍ରେଷ୍ଠ ଔପନ୍ୟାସିକଭାବେ ଜ୍ଞାନପୀଠ ପୁରସ୍କାର ପାଇବା ପରେ ବହୁ ଅନୁଷ୍ଠାନ ତରଫରୁ ତାଙ୍କୁ ଅଭିନନ୍ଦନ କରାଯାଉଅଛି । ଦେଶର ପ୍ରାୟ ସବୁ ସହରରେ ତାଙ୍କର ଏହି ପ୍ରତିଭାକୁ ସମ୍ମାନ ଦେଖାଇବା ପାଇଁ ସଭାସମିତି ହୋଇଯାଇଛି । ଏହି କେତେଦିନ ତଳେ ତାଙ୍କ ନିଜ ଗ୍ରାମରେ କେତେକ ଉତ୍ସାହୀ ଯୁବକ ଗୋଟିଏ ସାଧାରଣ ସଭା ଡାକି ଅଞ୍ଚଳ ତରଫରୁ ତାଙ୍କୁ ଅଭିନନ୍ଦନ ଓ ମାନପତ୍ର ଦେବାପାଇଁ ଆୟୋଜନ କରିଥିଲେ । ସେହି ସଭାରେ ଅଞ୍ଚଳର ସବୁଠାରୁ ମାନ୍ୟଗଣ୍ୟ ବୟୋବୃଦ୍ଧ ଅବସରପ୍ରାପ୍ତ ଶିକ୍ଷକ ଶ୍ରୀଯୁକ୍ତ ଡମ୍ବରୁଧର ମହାନ୍ତି ସଭାପତି ଆସନ ଅଳଙ୍କୃତ କରିଥିଲେ । ଡମ୍ବରୁବାବୁ ସ୍ୱୟଂ ଚୌଧୁରୀ ରାମନାଥଙ୍କର ଶିକ୍ଷକ ମଧ୍ୟ ଥିଲେ । ତେଣୁ ରାମନାଥବାବୁ ସେହି ସଭାରେ ବଡ଼ ବିନୀତଭାବେ ବସିଥିଲେ । ସଭାରେ ତାଙ୍କର ଗୁଣକୀର୍ତ୍ତି ଓ ସାହିତ୍ୟିକ ପ୍ରତିଭାର ଭୂୟସୀ ପ୍ରଶଂସା ହେଲା । ରାମନାଥବାବୁ ସମ୍ବର୍ଦ୍ଧନାର ଉତ୍ତରରେ ନିଜର ବାଲ୍ୟଶିକ୍ଷକ ସଭାପତି ଶ୍ରୀଯୁକ୍ତ ଡମ୍ବରୁଧର ମହାନ୍ତିଙ୍କର ଯଥେଷ୍ଟ ଗୁଣଗାନ କରିସାରି ଓ ତାଙ୍କର ପଦବନ୍ଦନା କରିସାରି ଖୁବ୍ ସଂକ୍ଷିପ୍ତ, ସାରଗର୍ଭକ ଅଥଚ ରସାଳ ଅଭିଭାଷଣଟିଏ ଦେଲେ । ତାପରେ ସ୍ୱୟଂ ସଭାପତି ମହାଶୟ ଶ୍ରୀଯୁକ୍ତ ଡମ୍ବରୁଧର ମହାନ୍ତି ଦଣ୍ଡାୟମାନ ହୋଇ ତାଙ୍କର ଭାଷଣ ଆରମ୍ଭ କଲେ—

ଶ୍ରଦ୍ଧେୟ ସୁସାହିତ୍ୟିକ ଆୟୁଷ୍ମାନ୍ ଚୌଧୁରୀ ରାମନାଥ ଦାସ ଓ ଗୁଣଗ୍ରାହୀ ସଜ୍ଜନବୃନ୍ଦ !!

ଆଜି ଏହି ସୁଧୀ-ସମାବେଶରେ ଉତ୍କଳର ବରବାଣୀପୁତ୍ର, ଏହି ଉପକୂଳ ଅଞ୍ଚଳର ଯୋଗଜନ୍ମା, ଏହି ଷଦ୍ୟାଳପୁର ପୁରାତନ କୀର୍ତ୍ତିଶାଳୀ

ସ୍ଥାନ ଚୌଧୁରୀ କୁଳତିଳକ ଶ୍ରୀମାନ୍ ଚୌଧୁରୀ ରମନାଥ ଦାସଙ୍କୁ ଯଥାଯୋଗ୍ୟ ଅଭିନନ୍ଦନ ଜଣାଇବା ପାଇଁ ମୋ ଭଳି ଜଣେ ଅବସରପ୍ରାପ୍ତ ସାମାନ୍ୟ ଶିକ୍ଷକଙ୍କୁ ସଭାପତିରୂପେ ବରଣ କରି ମତ୍ ପ୍ରତି ଆପଣମାନେ ଯଥେଷ୍ଟ ଉଦାରତା ଦେଖାଇଛନ୍ତି, ଏହା କହିବା ବାହୁଲ୍ୟ ମାତ୍ର ।



ସୁଧୀବୃନ୍ଦ ! ଏକେ ତ ମୁଁ ଜଣେ ସ୍ୱଳ୍ପ ଶିକ୍ଷାପ୍ରାପ୍ତ ନଗଣ୍ୟ ଶିକ୍ଷକ ଦୁଜେ ସାହିତ୍ୟ ମହାସାଗରର ଉପକୂଳରେ ସାମାନ୍ୟ ଉପଳଖଣ୍ଡ ସଂଗ୍ରହ କରିବାର ଯୋଗ୍ୟତା ମଧ୍ୟ ମୋର ନାହିଁ । ତତ୍‌ବ୍ୟତୀତ ଅତ୍ୟାଧୁନିକ ସାହିତ୍ୟ ସମ୍ପର୍କରେ ସାମାନ୍ୟ ବର୍ଣ୍ଣଗତ ଜ୍ଞାନ ମଧ୍ୟ ମୋର ନାହିଁ ।

(ଆଧୁନିକ ଗଳ୍ପ ଉପନ୍ୟାସାଦି ପାଠ କରିବା ଦୂରେ ଥାଉ, ସେଗୁଡ଼ିକ ପ୍ରତି ମଧ୍ୟବୟସର ବ୍ୟକ୍ତିମାନଙ୍କ ଚିତ୍ତରେ ଏକ ବଜାତୀୟ ସନ୍ଦେହ ଓ ଘୃଣା ଯେ ଲୁକ୍‌କାୟିତ ରହିଅଛି, ତାହା ଗୋପନ କଲେ ସତ୍ୟର ଘୋର ଅପଳାପ ହେବ । ତାଛଡ଼ା ମୋର ଜୀବନଯାକ ମାଇନର୍ ସ୍କୁଲରେ ଭୂଗୋଳ, ଜ୍ୟାମିତି ଓ ଚିତ୍ରାଙ୍କନ ଆଦି ପଢ଼ାଇବାରେ ବ୍ୟୟିତ ହୋଇଅଛି । ଆପଣମାନଙ୍କ ମଧ୍ୟରୁ କାହାର କାହାର ସ୍ମରଣ ଥାଇପାରେ— ଏହି ଉଚ୍ଚ ବିଦ୍ୟାଳୟ ଯେତେବେଳେ ମାଧ୍ୟମିକ ବିଦ୍ୟାଳୟଟିଏ ମାତ୍ର ଥିଲା—ଆଜକୁ ପଚିଶ ବର୍ଷ ତଳେ ଏହି ସ୍କୁଲରେ ଜଣେ ସୁପଣ୍ଡିତ ସୁରସିକ ସ୍ଥାନବତ୍ସଳ ଶିକ୍ଷକ ଥିଲେ । ତାଙ୍କ ନାମ ସ୍ୱର୍ଗତ ବଳଭଦ୍ର ନାୟକ, ଆହା ! ଆଜି ତାଙ୍କର ପୁଣ୍ୟ ନାମ ସ୍ମରଣ କରିବାର ସୁଯୋଗ ମିଳିଅଛି । ସେ ଉଚ୍ଚ

ଶ୍ରେଣୀମାନଙ୍କରେ ସାହିତ୍ୟ ପଢ଼ାଉଥିଲେ । ତାଙ୍କର ସୁଲଳିତ କଣ୍ଠସ୍ୱରରେ ଜୀବନଚିନ୍ତା, ଆକାଶପ୍ରତି, ନଦୀପ୍ରତି, ଉଷା, ଚନ୍ଦ୍ରଭାଗା, ପାର୍ବତୀ ଆଦି କାବ୍ୟକବିତାମାନଙ୍କର ଆବୃତ୍ତି ଓ ବ୍ୟାଖ୍ୟା ଶୁଣି ମନ୍ତ୍ର ସଦୃଶ ଶୁଷ୍କ ହୃଦୟ ଭୂଗୋଳ ଓ ଜ୍ୟାମିତି ଶିକ୍ଷକର ଚିତ୍ତ ମଧ୍ୟ ଅପୂର୍ବ ଭାବାବେଶରେ ତନ୍ମୟ ହୋଇଯାଉଥିଲା । ଆହା ! କାହିଁ ସେହି ସ୍ୱର୍ଗୀୟ ପବିତ୍ର ଗୁରୁଗମ୍ଭୀର ଭାବ-ଭକ୍ତିପୂର୍ଣ୍ଣ କାବ୍ୟକବିତା—ସେହି ସୁଲଳିତ କଣ୍ଠସ୍ୱର ଓ ସେହି ରସପୂର୍ଣ୍ଣ ବ୍ୟାଖ୍ୟା ! ଶ୍ରୀ ରାମନାଥ ସୁଯୋଗ୍ୟ ଶିକ୍ଷକଙ୍କର ସୁଯୋଗ୍ୟ ଛାତ୍ର ଥିଲେ ।

ସଜ୍ଜନବୃନ୍ଦ ! ମୁଁ ସାହିତ୍ୟ ସମ୍ପର୍କରେ ତାଙ୍କଠାରୁ ସେତିକି ମାତ୍ର ଯାହା ଜାଣିଥିଲି ! ଶ୍ରୀମାନ୍ ରାମନାଥ ମୋର ମଧ୍ୟ ପ୍ରିୟ ଛାତ୍ର ଥିଲେ । ଏଭଳି କୀର୍ତ୍ତିମାନ୍ ଛାତ୍ରର ଏକଦା ଶିକ୍ଷକ ହିସାବରେ ମୁଁ ମୋର ପୁଣ୍ୟ ଫଳକୁ ସ୍ମରଣ କରି ଧନ୍ୟ ମନେ କରୁଅଛି । ଆଜି ଉତ୍କଳ ସାହିତ୍ୟ ଗଗନରେ ଶ୍ରୀମାନ୍ ରାମନାଥ ଏକ ଉଜ୍ଜ୍ୱଳ ଭାସ୍କର । ତାଙ୍କ ଯୋଗେ ସମଗ୍ର ପ୍ରଦେଶ, ଦେଶ ଓ ଏହି କ୍ଷୁଦ୍ର ଉଚ୍ଚ ବିଦ୍ୟାଳୟଟି ସମେତ ସମଗ୍ର ଉପକୂଳ ଅଞ୍ଚଳ ଧନ୍ୟ ହୋଇଛନ୍ତି । ଉତ୍କଳ ସାହିତ୍ୟେତିହାସରେ ତାଙ୍କର ସୁନାମ ଅମରାକ୍ଷରେ ଲିପିବଦ୍ଧ ହୋଇ ରହିବ, ଏଥିରେ ସନ୍ଦେହ ନାହିଁ । ସେ ନିମ୍ନଲିଖିତ ଗଳ୍ପ ଉପନ୍ୟାସାଦି ଲେଖି ଉତ୍କଳ ବାଣୀଭଣ୍ଡାରକୁ ବିଭିନ୍ନ ଗ୍ରନ୍ଥରାଜିରେ ସମୃଦ୍ଧ କରିଅଛନ୍ତି ।

ଗଳ୍ପ ସଞ୍ଚୟନ—ମୁଗସାର ସ୍ୱପ୍ନ, ଧରିତ୍ରୀ ଓ ଧରିତ୍ରୀ, ଇନ୍ଦ୍ର ଓ ଇନ୍ଦୂର, ଅସ୍ତସୂର୍ଯ୍ୟର ରଙ୍ଗ, ମାଳମାର କବର, ବାସୀମଡ଼ା ।

ଉପନ୍ୟାସ—ନରଦାନବ, ଚନ୍ଦ୍ର ଓ ଫୁଲ, ଶତାବ୍ଦୀର ବୋଝ, ଉଦୟ ହଗନ୍ତି, ଅତିମାନବ, ମହାନଦୀର ଜଡ଼, ନିଃସଙ୍ଗ ନକ୍ଷତ୍ର ।

ପ୍ରବନ୍ଧାଦି—ସାହିତ୍ୟ ଓ ଧର୍ମ, ଶିଳ୍ପୀର ବ୍ୟକ୍ତିତ୍ୱ ଓ ପରମ୍ପରା, ଆଧାର ଓ ଆଧେୟ, ପ୍ରାଚୀନ ସାହିତ୍ୟ ଓ ଆଧୁନିକ ମନ, ସମାଜବାଦୀ ସାହିତ୍ୟର ନୂତନ ଭୂମିକା ।

ସୁଧୀବୃନ୍ଦ ! ସ୍ୱନାମଧନ୍ୟ ରାମନାଥଙ୍କର ବହୁ ଗ୍ରନ୍ଥ ଭିତରୁ ମୁଁ ଏତେକ ଟିପି ଆଣି ଆପଣମାନଙ୍କ ଆଗରେ ଉପସ୍ଥାପନ କରିଅଛି ।

ଆପଣମାନେ ଅଧିକାଂଶ ତାଙ୍କର ଏହି ମହାନ୍ କୀର୍ତ୍ତିଗୁଡ଼ିକ ସଙ୍ଗେ ପରିଚିତ ଥିବେ । ମୁଁ ତାଙ୍କର ବହୁ ଜ୍ଞାନଗର୍ଭକ କେତେଖଣ୍ଡ ପ୍ରବନ୍ଧ ପୁସ୍ତକ ଅଧ୍ୟୟନ କରିଅଛି, ମାତ୍ର ସେଗୁଡ଼ିକ ଏତେ ଜଟିଳ ତତ୍ତ୍ୱରେ ପରିପୂର୍ଣ୍ଣ ଯେ, ମତ ସଦୃଶ କ୍ଷୀଣବୁଦ୍ଧି ବ୍ୟକ୍ତି ପକ୍ଷରେ ତାହା ବୋଧଗମ୍ୟ ହୋଇପାରି ନାହିଁ, ପୁନଶ୍ଚ ତାଙ୍କର ଗଳ୍ପ ଉପନ୍ୟାସାଦି ପାଠ କରିବାରେ ଅଭ୍ୟସ୍ତ ନୋହୁଁ, ବାଲ୍ୟକାଳରେ ଫକୀରମୋହନଙ୍କର ଛ'ମାଣ ଆଠ ଗୁଣ୍ଠ ଓ ମାମୁଁ ଆଦି ଗଳ୍ପ ପାଠ କରିଥିଲୁ । ତହିଁରେ ବହୁ ମିତ ଉପଦେଶମାନ ଆମ୍ଭମାନଙ୍କ ନୈତିକ ଜୀବନ ଗଠନରେ ସାହାଯ୍ୟ କରିଥିଲା । ସେଗୁଡ଼ିକରେ ପୁଣ୍ୟବାନ୍‌ର ବିଜୟ ଓ ପାପୀର ପରାଜୟ ଦେଖାଇ ଦିଆ ହୋଇଅଛି । ତାହା ମାନବ ସମାଜକୁ ବହୁ ଶିକ୍ଷା ଦେଇଅଛି । ମାତ୍ର ଅଧୁନା ଗଳ୍ପ ଉପନ୍ୟାସମାନଙ୍କର କିଛି ଆଦର୍ଶ ନାହିଁ । ଅବଶ୍ୟ ଶ୍ରୀମାନ୍ ରାମନାଥଙ୍କର ଗଳ୍ପମାନଙ୍କ ବିରୁଦ୍ଧରେ ମୁଁ ଏ କଥା କହୁନାହିଁ, ତାଙ୍କର ଗଳ୍ପ ଉପନ୍ୟାସ ପ୍ରତି ଆପଣମାନଙ୍କ ଆଦରକୁ ମୁଁ ସମ୍ମାନ କରୁଅଛି; କିନ୍ତୁ ମୁଁ ସତ କହୁଛି—ତାଙ୍କର ଗଳ୍ପ ଉପନ୍ୟାସମାନ ମୋତେ ଆନନ୍ଦ ଦେଇପାରି ନାହିଁ । ଥରେ ତାଙ୍କର ଖଣ୍ଡିଏ ଉପନ୍ୟାସ ମୋର ଝିଅ ଆଣି ପଢ଼ୁଥିଲା । ମୁଁ ସେଥିରୁ କେତୋଟି ପୃଷ୍ଠା ଶୟନକାଳରେ ଅଧ୍ୟୟନ କଲି । ମାତ୍ର ତାହା ମୋତେ କିଛି ବିଶେଷ ଆକର୍ଷଣ କଲା ନାହିଁ । ବରଂ ମୋର ମନେହେଲା—ସେଗୁଡ଼ିକ ମିଥ୍ୟା କଥା ଲେଖି ଅଛନ୍ତି । ସଚରାଚର ଯାହା ଘଟେ ତାହା ଲେଖି ନାହାନ୍ତି, ସେଗୁଡ଼ିକ କପୋଳକଳ୍ପିତ ବୋଲି ମୋର ଧାରଣା ହେଲା । ଅବଶ୍ୟ ସେଥିରେ ଉଚ୍ଚ ଭାବ ନିଶ୍ଚୟ ଥାଇପାରେ । ମାତ୍ର ଗର୍ଦ୍ଦଭ ଚନ୍ଦନର ସୁବାସକୁ ନ ବୁଝି ପାରିଲା ଭଳି, କାକପକ୍ଷୀ ଆମ୍ର ବକୁଳର ମର୍ଯ୍ୟାଦାକୁ ହୃଦୟଙ୍ଗମ ନ କରି ପାରିଲା ଭଳି ମତ ସଦୃଶ କ୍ଷୀଣବୁଦ୍ଧି, ସ୍ୱଳ୍ପଶିକ୍ଷିତ ବ୍ୟକ୍ତି ସେହି ଉଚ୍ଚାଙ୍ଗ ଗ୍ରନ୍ଥମାନଙ୍କର ମର୍ମବୋଧ କରିବା ଅତୀବ କଷ୍ଟସାଧ୍ୟ ହୋଇପାରେ । ତେଣୁ ହେଲୁ ସେହି ଗ୍ରନ୍ଥଗୁଡ଼ିକର ବକ୍ତବ୍ୟ ବିଷୟମାନ ମୋତେ ମିଥ୍ୟା ମନେ ହୋଇପାରେ, ଯଦିଓ ଦେଶର ସୁଧୀ, ପଣ୍ଡିତ, ରସିକ, ସମାଲୋଚକଗଣ ଶ୍ରୀମାନ୍ ରାମନାଥଙ୍କ ଲେଖାରେ ଜାତୀୟବାଦ, ମାନବବାଦ, ସମାଜବାଦ ଓ ଆଧ୍ୟାତ୍ମବାଦ ଇତ୍ୟାଦି ଆବିଷ୍କାର କରି ତାହାକୁ ଜ୍ଞାନପୀଠ ପୁରସ୍କାର ପ୍ରଦାନ କରି ଆମ୍ଭମାନଙ୍କୁ ଓ ଉତ୍କଳଜନନୀଙ୍କୁ ଧନ୍ୟ କରିଅଛନ୍ତି ।

ବୁଧ ମଣ୍ଡଳୀ ! ଶ୍ରୀମାନ୍ ରାମନାଥଙ୍କ ଗଳ୍ପ ଉପନ୍ୟାସାଦି ମୋତେ ମିଥ୍ୟା ଓ କପୋଳକଳ୍ପିତ ମନେ ହେବାର ଆଉ ଗୋଟିଏ ଗୁହ୍ୟ କାରଣ ଅଛି ବୋଲି ମୋର ମନେହୁଏ ।

ଆପଣମାନେ ଶୁଣି ବିସ୍ମିତ ହେବେ ଯେ, ଯଦିଓ ଶ୍ରୀମାନ୍ ରାମନାଥଙ୍କର କବିତ୍ୱ କଳା ସେହି ବାଲ୍ୟାବଧି ଆବିଷ୍କୃତ ହୋଇଥିଲା— ଯଦିଓ ସେ ଥିଲେ ତୀକ୍ଷ୍ଣଧୀଶକ୍ତିସମ୍ପନ୍ନ, ଯଦିଓ ତାଙ୍କର ପ୍ରତ୍ୟୁତ୍ପନ୍ନମତିତ୍ୱ ଓ ପରୋପକାରିତାର ବହୁ ଉଦାହରଣ ମୋର ସ୍ମୃତିପଟରେ ବି ଅଦ୍ୟାବଧି ସ୍ୱର୍ଣ୍ଣୋଜ୍ଜ୍ୱଳ ମହିମାରେ ଅଙ୍କିତ ରହିଅଛି—ତଥାପି ଚନ୍ଦ୍ରରେ କଳଙ୍କନ୍ୟାୟ, ଦେବତାତ୍ମା ହିମାଳୟରେ ତୁଷାରନ୍ୟାୟ, ଗୋଲାପରେ କଣ୍ଟକ ସଦୃଶ ତାଙ୍କର ବିମଳ ଚରିତ୍ରରେ ଗୋଟିଏ କୁଗୁଣ ମଧ୍ୟ ଥିଲା । ସେ ଥିଲେ ବାଲ୍ୟକାଳରୁ ମିଥ୍ୟାବାଦୀ ଏବଂ କିଞ୍ଚିତ୍ ଦୁଷ୍ଟ ପ୍ରକୃତିର ବାଳକ । ବାକ୍ୟାଳାପରେ ସେ ସର୍ବଦା ଚଞ୍ଚଳ, ଚପଳ, ପ୍ରଗଲ୍ଭ, ତର୍କଖୋର, ପରିହାସପ୍ରିୟ, ନିର୍ବିକାର ଓ ସେହିପରି···ମିଥ୍ୟାବାଦୀ । ତାଙ୍କର ସମସ୍ତ ସଦ୍‌ଗୁଣ ସତ୍ତ୍ୱେ ଏହି ମିଥ୍ୟାବାଦିତା ଗୁଣ ଯୋଗୁ ଅନ୍ୟାନ୍ୟ ଶିକ୍ଷକଗଣ ଓ ବିଶେଷତଃ ମୁଁ ତାଙ୍କ ଉପରେ ମଧ୍ୟେ ମଧ୍ୟେ ରୁଷ୍ଟ ହୋଇ ପଡ଼ୁଥିଲି । ମୁଁ ମଧ୍ୟ ସ୍ୱୀକାର କରୁଛି ଯେ, ମୋର ଯୌବନ କାଳରେ ମୁଁ ନିଜେ ଥିଲି 'କ୍ଷଣେ ତୁଷ୍ଟ କ୍ଷଣେ ରୁଷ୍ଟ' ପ୍ରକୃତିର । ଏବେ ମଧ୍ୟ ମୋର ସେହି ପ୍ରକୃତି ଯାଇନାହିଁ । 'ଅଙ୍ଗାର ଶତଧୌତେନ ମଳିନତ୍ୱ ନ ଯାୟତେ ।' ମୁଁ ବହୁବାର ଏହି ସୁନାମଧନ୍ୟ କବିଚନ୍ଦ୍ରଙ୍କର କର୍ଣ୍ଣ ମର୍ଦ୍ଦନ କରିଅଛି । ଚପେଟାଘାତ କରିଅଛି ; କିନ୍ତୁ ତାଙ୍କର ଏତିକ ମଧ୍ୟ ସଦ୍‌ଗୁଣ ଥିଲା ଯେ, ସେ କେବେ ତା'ର ପ୍ରତିବାଦ କରିନାହାନ୍ତି । ଗୁରୁଭକ୍ତି ତାଙ୍କର ଖୁବ୍ ଥିଲା । ଆଧୁନିକ ପିଲାମାନଙ୍କ ପରି ସେ ନ ଥିଲେ । ସେ ଜାଣିଥିଲେ ଯେ, ଶିକ୍ଷକମାନେ ତାଙ୍କର ଭବିଷ୍ୟତର ମଙ୍ଗଳ ପାଇଁ ତାଙ୍କୁ ଦଣ୍ଡ ଦିଅନ୍ତି । ସେହି ସଦ୍‌ଗୁଣ ଯୋଗୁ ସେ ଆଜି ଦେଶର ଗୌରବ ହୋଇଛନ୍ତି କିନା ! ତାହା ପଛରେ ତାଙ୍କର ଶିକ୍ଷକମାନଙ୍କର ଆଶୀର୍ବାଦ ଯେ ନିହିତ ଅଛି, ଏ କଥା ସେ ତାଙ୍କର ବକ୍ତବ୍ୟରେ ମଧ୍ୟ ସ୍ୱୀକାର କରିଅଛନ୍ତି ।)

ହଁ, ତାଙ୍କର ଲେଖା ସବୁ ମୋତେ କପୋଳକଳ୍ପିତ ମନେ ହେବାର କାରଣ ହେଲା, ମୁଁ ତାଙ୍କୁ ବାଲ୍ୟକାଳରୁ ମିଥ୍ୟାବାଦୀ ବୋଲି ଜାଣିଥିଲି । ଗୋଟିଏ ଘଟଣା କହେ—ଥରେ ସେ କାଳର ଧର୍ମପ୍ରାଣ ବୈଷ୍ଣବପ୍ରବର ପ୍ରଧାନ ଶିକ୍ଷକ ସ୍ୱର୍ଗତ ଶଙ୍କର ତ୍ରିପାଠୀ ମହୋଦୟ (ଆହା ଧନ୍ୟ ମୁଁ ତାଙ୍କ ନାମ ସ୍ମରଣ କଲି) ଏକ ଶନିବାସରୀୟ ନୈଶ ସଭାରେ ଛାତ୍ର ଶିକ୍ଷକ ସମାବେଶରେ ଈଶ୍ୱରଭକ୍ତି ଉପରେ ଏକ ଚମତ୍କାର ତାତ୍ତ୍ୱିକ ଭାଷଣ ଦେବାର ଉପକ୍ରମ କରୁ କରୁ ପ୍ରଶ୍ନ କଲେ, କେହି ଈଶ୍ୱରଙ୍କୁ ଦେଖିଅଛ କି ? ସଭାରେ ସମସ୍ତେ ନୀରବ ରହିଲେ । ମାତ୍ର ଚପଳମନା ପ୍ରଗଳ୍‌ଭ ରାମନାଥ ଧଡ଼କେ ଠିଆ ହୋଇ ଦଣ୍ଡାୟମାନ ହୋଇ କହିଲେ—ହଁ ସାର୍ । ମୁଁ ଦେଖିଛି । ପ୍ରଧାନ ଶିକ୍ଷକ ମହୋଦୟ ସ୍ତମ୍ଭୀଭୂତ ହୋଇଗଲେ । ମୁଁ ରାଗରେ ପାଚିଗଲି । ପ୍ରଧାନ ଶିକ୍ଷକ ପଚାରିଲେ— କେଉଁଠି କିପରି ଦେଖିଅଛ ? ମିଥ୍ୟା କହୁନାହଁ ତ ?

ରାମନାଥ ନିର୍ବିକାରଭାବେ ଉତ୍ତର ଦେଲେ—ସାର୍ ! ଈଶ୍ୱରଙ୍କ ଶପଥ ନେଇ କହୁଛି—ମୁଁ ତାଙ୍କୁ ଦେଖିଛି । ସେ କେତେକାଂଶରେ ମୋ ପରି, ଆଉ କେତେକାଂଶରେ ଆପଣଙ୍କ ପରି ଓ ଅବଶିଷ୍ଟାଂଶ କେମିତି କିପରି ମୁଁ କହି ପାରୁନାହିଁ । ମୁଁ ତାଙ୍କୁ ମୋ ପାଖେ ପାଖେ ଦେଖିଛି ; କିନ୍ତୁ ସେ ମୋ ପାଖରେ ନ ରହି ପଳାଇଯାନ୍ତି ।

ତାଙ୍କ ଉତ୍ତର ଶୁଣି ସମସ୍ତେ ହସିଲେ । ମୁଁ କିନ୍ତୁ ରାଗିଗଲି । ସଭା ସରିଲା । ସଭାଭଙ୍ଗ ପରେ ମୁଁ ତାଙ୍କର କର୍ଣ୍ଣ ମର୍ଦ୍ଦନ କରି ବହୁ ଚପେଟାଘାତ କଲି । ମିଥ୍ୟାବାଦୀ ଘୋର ମିଥ୍ୟାବାଦୀ । ଏ ଚପଳ ପ୍ରଗଳ୍‌ଭତାକୁ ସଂଯତ କର । ନଚେତ୍ ତୁମର ଧ୍ୱଂସ ଅନିବାର୍ଯ୍ୟ ।

ମାତ୍ର ରାମନାଥ ମିଥ୍ୟାକୁ ଛାଡ଼ି ପାରିଲେ ନାହିଁ । ଆଉ ଥରେ ଗୋଟିଏ ହଡ଼ାବଳଦର ଆତ୍ମକାହାଣୀ ପ୍ରବନ୍ଧଟି ଲେଖି ସେ ବଳଭଦ୍ର ପଣ୍ଡିତଙ୍କ ଦୃଷ୍ଟି ଆକର୍ଷଣ କଲେ । ପ୍ରବନ୍ଧଟି ଏପରି କରୁଣ ଓ ମର୍ମସ୍ପର୍ଶୀ ହୋଇଥିଲା, ପୁଣି ତା'ର ଭାଷା ମଧ୍ୟ ଏତେ ସାବଲୀଳ ଥିଲା ଯେ, ସେ ବୟସର ବାଳକ ପକ୍ଷେ ଏହା ନିତାନ୍ତ ଅସମ୍ଭବ ବୋଲି ଆମ୍ଭମାନଙ୍କର ବୋଧ ହୋଇଥିଲା । ରାମନାଥ ଏହାକୁ କେଉଁଠାରୁ କପି କରିଥିବେ

ବୋଲି ସମସ୍ତେ ସନ୍ଦେହ କଲେ, ମୁଁ ପଚାରିଲି, ରାମନାଥ ! ତୁମେ ପ୍ରକୃତରେ ଏ ପ୍ରବନ୍ଧଟି ଲେଖିଅଛ କି ? ସତ କହ, ରାମନାଥ ସାଙ୍ଗେ ସାଙ୍ଗେ ବିନା ଦ୍ୱିଧାରେ ଉତ୍ତର ଦେଲେ—ହଁ ସାର୍ ! ସତ କହୁଛି— ମୁଁ ଲେଖିଛି । ମୁଁ କହିଲି, ଆଚ୍ଛା ଯଦି ତୁମେ ଏହା ଲେଖିଛ, ତେବେ ଆଉ ଥରେ ଯାହା ଲେଖିଛ, ତାହା ଅବିକଳ ଲେଖିଆଣି ପାରିବ କି ? ସେ ସଙ୍ଗେ ସଙ୍ଗେ କହିଲେ—ନା, ସାର୍ ! ମୁଁ ତାହା ଆଉ ଥରେ ଅବିକଳ ଲେଖି ପାରିବି ନାହିଁ । ମାତ୍ର ସେଇଟିକୁ ମୁଁ କୋଉଠୁ କପି କରିନାହିଁ । ସେଥିରେ ମଧ୍ୟ ମୁଁ ରାମନାଥଙ୍କର ମିଥ୍ୟାବାଦିତା ଯୋଗୁ ତାଙ୍କୁ ତମେଟାଧାତ କରିଥିଲି । ବିନା ପ୍ରତିବାଦରେ ଗୁରୁଭକ୍ତ ବାଳକ ତାକୁ ଅବଶ୍ୟ ସହ୍ୟ କରିଥିଲା । ଆଜି ସେଇଥିଲାଗି ସେ ଏତେବଡ଼ ଯଶସ୍ୱୀ ହୋଇ ପାରିଛନ୍ତି ।

ଆଉ ଦିନକର କଥା । ରାମନାଥ ଗୋଟିଏ କବିତା ଲେଖି ତାକୁ ସ୍କୁଲର ହସ୍ତଲିଖିତ ପତ୍ରିକାରେ ପ୍ରକାଶ କରିଥିଲେ । ତାହାର ପ୍ରଥମ ଧାଡ଼ିଟି ଆଜି ପର୍ଯ୍ୟନ୍ତ ମୋର ମନେଅଛି । "ଶୁଣିଛ କି କେହି କେବେ ଅର୍ଦ୍ଧରାତ୍ରେ ପୃଥିବୀର ଆକୁଳ କ୍ରନ୍ଦନ ?" ମୁଁ ପଚାରିଲି—ରାମନାଥ ! ତୁମର ଏହା ନିଶ୍ଚୟ ମନଗଢ଼ା କଥା । ତୁମେ ଭଲା ଏମିତି ସତରେ କେବେ ଶୁଣିଛ ? ରାମନାଥ ସଙ୍ଗେ ସଙ୍ଗେ ଉତ୍ତର ଦେଲେ—ହଁ ସାର୍ ! ମୁଁ ଥରେ ନୁହେଁ—ବାରମ୍ବାର ଶୁଣିଛି । ତାଙ୍କର ଏ ମିଥ୍ୟା ଭାଷଣରେ ମୁଁ ଅତି ମର୍ମାହତ ହୋଇଥିଲି ଏବଂ ଭର୍ତ୍ସନା କରିଥିଲି । ଏହିଭଳି ବହୁ ମିଥ୍ୟା ସେ କହୁଥିଲେ । ତାଙ୍କର ସାଙ୍ଗସାଥିମାନେ ମଧ୍ୟ ତାଙ୍କ ବିରୁଦ୍ଧରେ ଏହି ମିଥ୍ୟାଗୁର ଅଭିଯୋଗ କରୁଥିଲେ । ତେଣୁ ମୋର ତାଙ୍କ କଥାରେ ଆଦୌ ବିଶ୍ୱାସ ନ ଥିଲା । ଏପରିସ୍ଥଳେ ମୁଁ ତାଙ୍କର ଲେଖାଗୁଡ଼ିକୁ ତାଙ୍କର ମନଗଢ଼ା ବୋଲି ନ ବିଚାରିବି ବା କପରି ?

**ଶୁଣ ଆଉ ଦିନକର କଥା**--

ଆଉ ଏଇଟା ବୋଧେ ତାଙ୍କର ମୋ ପାଖରେ ଶେଷ ଥର ପାଇଁ ମିଥ୍ୟା ଭାଷଣ । ମୁଁ ସେ କଥା ଭୁଲି ପାରିବି ନାହିଁ ! ତାହା ମଧ୍ୟ ମୋ ଜୀବନରେ ଏକ ଅଲିଭା ଦାଗ ହୋଇ ରହିଥିବ ।

ସୁଧୀବୃନ୍ଦ ! ମୁଁ ନିଜେ ଜଣେ ସାମାନ୍ୟ ଶିକ୍ଷକ ହେଲେହେଁ ଜଣେ ଆଦର୍ଶ ଶିକ୍ଷକ ହେବାକୁ ମୁଁ ପ୍ରାଣାନ୍ତକ ଚେଷ୍ଟା କରିଅଛି । ନିରଳସତା, ସାଧୁତା, ବିନମ୍ରତା, ମିତବାଦିତା ଓ ସତ୍ୟବାଦିତା ଆଦି ସଚ୍ଚରିତ୍ରର ସମସ୍ତ ଗୁଣ ଆମେ ସେ କାଳେ ଅଭ୍ୟସ୍ତ କରୁଥିଲୁ ଏବଂ ବିଶେଷଭାବେ 'ସତ୍ୟ' ଉପରେ ଆମେ ସେ କାଳେ ଖୁବ୍ ଗୁରୁତ୍ୱ ଦେଉଥିଲୁ । 'ସତ୍ୟ ପଥେ ଧର୍ମ ପଥେ ହେଉନିଯାଉ ମୋତେ'—ଥିଲା ସେ ଯୁଗରେ ଆମ୍ଭମାନଙ୍କର ଏକମାତ୍ର ସାଧନା । ଯାହାହେଉ ପଛେ, ଆମେ କେହି ମିଥ୍ୟାବାଦୀ ନ ଥିଲୁ । ଆମର ଖରାପ ଚରିତ୍ରର ପ୍ରଭାବ ପିଲାମାନଙ୍କ ଉପରେ ପଡ଼ିବ ବୋଲି ଆମେ ଖୁବ୍ ସଚେତନ ମଧ୍ୟ ଥିଲୁ; କିନ୍ତୁ ବନ୍ଧୁଗଣ ! ଭାଗ୍ୟ ବଳବତ୍ତର ଅଟେ । ଦୁର୍ଭାଗ୍ୟ ଉପସ୍ଥିତ ହେଲେ ମନୁଷ୍ୟର ନୈତିକ ଗର୍ବ ମଧ୍ୟ ନିମିଷକେ ଭାଙ୍ଗି ଚୂରମାର ହୋଇଯାଏ ।

ଶ୍ରୀମାନ୍ ରାମନାଥ ସେତେବେଳେ ଏହି ବିଦ୍ୟାଳୟରୁ ଉତ୍ତୀର୍ଣ୍ଣ ହୋଇ ରେଭେନ୍ସା ମହାବିଦ୍ୟାଳୟରେ ଏମ. ଏ. ପଢ଼ୁଥିଲେ । ସେ ଛାତ୍ରାବାସରେ ସାଧାରଣ ସମ୍ପାଦକରୂପେ ମଧ୍ୟ ନିର୍ବାଚିତ ହୋଇଥିଲେ । କଲେଜର ବହୁ ଅନୁଷ୍ଠାନ ସଙ୍ଗେ ମଧ୍ୟ ସେତେବେଳେ ସେ ଜଡ଼ିତ । ନିଜର ମେଧା ଓ ଅନ୍ୟାନ୍ୟ ସଦ୍‌ଗୁଣମାନଙ୍କର ବିକାଶ କରି ଛାତ୍ରମାନଙ୍କ ମଧ୍ୟରେ ଖୁବ୍ ଲୋକପ୍ରିୟ ହୋଇଥାନ୍ତି । ସେ ସମ୍ବାଦ ମଧ୍ୟ ଶୁଭାକାଂକ୍ଷୀ ଶିକ୍ଷକ ହିସାବରେ ଆମ୍ଭମାନଙ୍କ ପାଖକୁ ଆସୁଥାଏ ।

ସେ ବର୍ଷ ଘରୋଇଭାବେ ଆଇ. ଏ. ପରୀକ୍ଷା ଦେବାପାଇଁ ମୁଁ ପରୀକ୍ଷା ପୂର୍ବରୁ ମାସେ ଛୁଟି ନେଇ ଶ୍ରୀମାନ୍ ରାମନାଥଙ୍କ ସଙ୍ଗେ ଅତିଥି ହୋଇ ରହିଲି । ସେ ଗୋଟିଏ ସ୍ୱତନ୍ତ୍ର କୋଠରୀରେ ରହୁଥାନ୍ତି । ସେ ମୋତେ ତାଙ୍କ ଖଟ ଛାଡ଼ିଦେଇ ତଳେ ଶୟନ କରୁଥାନ୍ତି । ଏଭଳି ଗୁରୁଭକ୍ତି ମଧ୍ୟ ଅଧୁନା ବିରଳ ଅଟେ । ସେ ଯାହାହେଉ—ମୁଁ ଆଇ.ଏ. ପରୀକ୍ଷା ଲାଗି ପ୍ରସ୍ତୁତ ହେଉଥାଏ । ସେଥିରେ ମଧ୍ୟ ରାମନାଥ ମୋତେ ସାହାଯ୍ୟ କରୁଥାନ୍ତି; ରାମନାଥ ସର୍ବପ୍ରିୟଭାଜନ ଥିବା ହେତୁ ବହୁ ପ୍ରକାର ଛାତ୍ର ତାଙ୍କ ସଙ୍ଗେ ଆଳାପ ଓ ମେଳାପ କରୁଥାନ୍ତି । ପ୍ରଥମେ ମୁଁ ଅନ୍ୟାନ୍ୟ ଛାତ୍ରମାନଙ୍କଠାରୁ ଟିକିଏ ବୟସୋଚିତ ଦୂରତ୍ୱ ରକ୍ଷାକରି

ଚଳୁଥିଲି । ମାତ୍ର ପନ୍ଦର ଦିନ ପରେ ତାହା ଆଉ ସମ୍ଭବ ହେଲା ନାହିଁ । ଯୁବକମାନଙ୍କ ପରିବେଷ୍ଟନୀରେ ସର୍ବଦା ରହିବା ଫଳରେ ସେମାନଙ୍କର ସୁବସୁଲଭ ଉନ୍ମାଦନା, ଉଦ୍ଦାମତା ଓ ମୁକ୍ତଧାଯୁତା କ୍ରମଶଃ ମୋ ଭଳି ପ୍ରୌଢ଼ ହୃଦୟକୁ ମଧ୍ୟ ମୋର ଅଲକ୍ଷ୍ୟରେ ସଂକ୍ରମିତ ହୋଇଥିଲା । ଶ୍ରୀମାନ୍ ରାମନାଥଙ୍କର ଯୁବବନ୍ଧୁମାନେ କ୍ରମଶଃ ମୋ ସଙ୍ଗେ ଅଧିକ ମିଳାମିଶା କଲେ ଓ ମୁଁ ମଧ୍ୟ ନିଃସଙ୍ଗତାରୁ ରକ୍ଷା ପାଇବା ପାଇଁ ସେମାନଙ୍କ ସଙ୍ଗେ ଆହୁରି ମିଶିଗଲି । କ୍ରମେ ଆମ୍ଭମାନଙ୍କ ମଧ୍ୟରେ ଥଟ୍ଟା ପରିହାସ ମଧ୍ୟ ଆରମ୍ଭ ହୋଇଗଲା । ଶ୍ରୀମାନ୍ ରାମନାଥ କିନ୍ତୁ ମୋର ଏତେ ନିକଟରେ ଥାଇ ମଧ୍ୟ ମୋ ଠାରୁ ଯଥାଯୋଗ୍ୟ ଶିକ୍ଷକର ପ୍ରାପ୍ୟ ଯେତେ ସମ୍ଭବ ଦୂରତ୍ୱ ରକ୍ଷାକରି ଚଳୁଥାନ୍ତି ।

ଦିନେ ରାମନାଥ ବଜାରକୁ ଯାଇ ତାଙ୍କ ଲାଗି ଗୋଟିଏ ପଞ୍ଜାବୀ କିଣି ଆଣିଲେ । ପଞ୍ଜାବୀଟି ଉତ୍କୃଷ୍ଟ ସିଲ୍କ କପଡ଼ାରେ ନିର୍ମିତ ଥିଲା । ସେ ତାକୁ ର୍ୟାକେଟରେ ଟାଙ୍ଗିଦେଲେ । ପଞ୍ଜାବୀଟିର ସୁନ୍ଦର ରଙ୍ଗ ଓ ମସୃଣତା ବଡ଼ ଲୋଭନୀୟ ଥିଲା । ମଦ୍ଧୃଶ ବଦ୍ଧକୁଣ୍ଠିମ୍ନୀ ଦରିଦ୍ର ଶିକ୍ଷକ ପକ୍ଷରେ ଏହା ଖୁବ୍ ମହାର୍ଘ ବିଳାସିତାର ପୋଷାକ ଥିଲା, ସନ୍ଦେହ ନାହିଁ । ସେହି ପଞ୍ଜାବୀଟି ଥିଲା ମୋ ପକ୍ଷରେ ଦୁର୍ଭାଗ୍ୟର ଏକ ମୂର୍ତ୍ତିମନ୍ତ ପ୍ରତୀକ । ଶ୍ରୀମାନ୍ ରାମନାଥଙ୍କ ଅନୁପସ୍ଥିତିରେ ତତ୍ପର ଦିନ ମୁଁ ସେହି ପଞ୍ଜାବୀଟି ପିନ୍ଧି ବଜାରକୁ ବାହାରି ପଡ଼ିଲି । ତାକୁ ପିନ୍ଧିଲାମାତ୍ରେ ମହାର୍ଘ-ବସନ ପରିଧାନଜନିତ ଏକ ଉଲ୍ଲାସରେ ମୋର ଦେହ କମ୍ପି ଉଠିଲା । ମୋର ମନ ଭିତରେ ଷଡ଼ୈଶ୍ୱର୍ଯ୍ୟଧାନ ନିର୍ଦ୍ଦେଶ ଦେଲା ଏହାକୁ ପିନ୍ଧି ଆଉ ଦେହରୁ ଓହ୍ଲାଅ ନାହିଁ; ଶ୍ରୀମାନ୍ ରାମନାଥ ସଦୃଶ ଗୁରୁଭକ୍ତ ଛାତ୍ର ଏହାକୁ ଆଉ ଫେରାଇ ନେବ ନାହିଁ । ମୁଁ ତାକୁ ପିନ୍ଧି ବଜାରଯାକ ବୁଲିଲି ଏବଂ ଖୁବ୍ ସ୍ଫୂର୍ତ୍ତି ଅନୁଭବ କଲି । ଏପରିକି ମୋର ମନରୁ ଦାରିଦ୍ର୍ୟ ଓ ପ୍ରୌଢ଼ ଭାବନାମାନ ଉଭେଇ ଯାଇ ବରଂ ଯୁବକୋଚିତ ପ୍ରଫୁଲ୍ଲତା ଓ ଉତ୍ତେଜନା ଖେଳିଗଲା । କାହିଁକି କେଜାଣି, ସେଦିନ ବଜାରରୁ ମୁଁ ଗୋଟିଏ ହିମାନୀ ସ୍ନୋ ମଧ୍ୟ କିଣିଆଣି ହଷ୍ଟେଲକୁ ଫେରିଲି । କୋଠରୀକୁ ଆସି ଦେଖିଲି, ଶ୍ରୀମାନ୍ ରାମନାଥ ତଥାପି ମଧ୍ୟ ଫେରି ନାହାନ୍ତି । ମୁଁ ମୁହଁରେ ସ୍ନୋ

ମାଗିହେଲ ଏବଂ ସଙ୍ଗେ ସଙ୍ଗେ ଚଟି ଘୋଷାର ଘୋଷାର ଛାତ୍ରମାନଙ୍କ କମନ୍ ରୁମ୍ ଆଡ଼େ ଗ୍ଲଲଲ । ମୋର ଅତ ସାଧାରଣ ସାମାନ୍ୟ ମଳନ ଷ୍ଟ୍ରେଟ ମିଡ୍ଫ୍ଯୁମ ଧୋତି ସାଙ୍ଗକୁ ଯେ ସେ ପଞ୍ଜାବୀଟି ଆଦୌ ମାନୁ ନ ଥିଲ, ସେ ସମ୍ପର୍କରେ ମୁଁ ସେତେବେଳେ ଆଦୌ ସଚେତନ ହୋଇପାର ନ ଥିଲ ।

(କମନ୍ ରୁମ୍‌ରେ ବହୁ ଛାତ୍ର ଏକତ୍ର ହୋଇ ବୟସୋଚିତ ନାନାଦ ପ୍ରମୋଦାଳାପରେ ରତ ଥିଲେ । ଚଳଚ୍ଚିତ୍ର କାମାନଙ୍କ ବିଷୟରେ ଓ ସୁନ୍ଦର ସହପାଠିନୀମାନଙ୍କ ସମ୍ବନ୍ଧେ ଚର୍ଚ୍ଚା କରି ଉନ୍ମତ୍ତ ହେଉଥିଲେ । ମୁଁ ମଇଳା ଧୋତି ସଙ୍ଗକୁ ସିଲ୍କ ପଞ୍ଜାବୀଟି ପିନ୍ଧି, ଗ୍ନୋ ମୁଖ ହୋଇ ସେହି ଯୌବନର ଜଡ୍‌ବେଳନ ମଧ୍ୟକୁ ପଶିଗଲ ଏବଂ ସେମାନଙ୍କ ସଙ୍ଗେ ସମ୍ପୂର୍ଣ୍ଣ ଅସ୍ୱାଭାବିକଭାବେ ସେହି ଆଳାପରେ ଯୋଗ ଦେଲି । ମୁଁ ଏପରିଭାବେ ସେମାନଙ୍କ ଭାବଧାରା ଦ୍ୱାରା ସଂଯମିତ ହୋଇଗଲ ଯେ, କଥା ମଝିରେ ମୋର ଅଜାଣତରେ ମୋର ଶିକ୍ଷକ ପୂର୍ବ ଜୀବନର, ମାନେ ମୋର କଶୋର ଜୀବନର ଏ ଗ୍ରାମ୍ୟ ବାଳିକା ସଙ୍ଗେ ପ୍ରେମ କାହାଣୀ ମଧ୍ୟ ସେମାନଙ୍କ ଆଗରେ କହି ପକାଇଲି, ସେମାନେ ହସି ହସି ଗଡ଼ିଗଲେ ଓ) ସେହି ଅବସରରେ ଜଣେ ଚପଳ ଯୁବକ ଆସି ମୋର ପରିଚିତ ପଞ୍ଜାବୀଟିକୁ ଦେଖି ଟିପରେ ପରୀକ୍ଷା କଲେ ଏବଂ ସଙ୍ଗେ ସଙ୍ଗେ ପଞ୍ଜାବୀଟି କାହା ଦୋକାନରୁ କଣିଲି ଓ କେତେ ଦାମ୍ ପଡ଼ିଲା ବୋଲି ପଗ୍ଚରି ଦେଲେ । ମୋର ପାଟି ଅଟା ମାରିଗଲା ।

ମୁଁ କିଛି ଜବାବ୍ ଦେବା ପୂର୍ବରୁ ଆଉ ଜଣେ ଯୁବକ କହିଲେ ଯେ, ଏହି ପଞ୍ଜାବୀଟି ଗତକାଲି ରାମନାଥ ତା ନିଜ ପାଇଁ କଣି ଆଣିବାର ସେ ଦେଖିଛି । ତା ପାଟିରୁ ଏ କଥା ବାହାରିବାମାତ୍ରେ ସମସ୍ତେ ମୋତେ ଘେରିଗଲେ ଏବଂ ପରିହାସ କରିବାକୁ ଉଦ୍ୟତ ହେଲେ ।

ମୁଁ ସେହି ପରିସ୍ଥିତିରେ ସେତିକ ମାନ ଯାଇଥିଲେ ଭଲ ହୋଇଥାନ୍ତା; ମାତ୍ର ସେ ପରିସ୍ଥିତିରେ ସତ କହିବାକୁ ମୋର ଆଉ ସାହସ କୁଳାଇଲା ନାହିଁ । ତାଛଡ଼ା ମୋର ମଧ୍ୟ ସେତେବେଳେ ଭାଗ୍ୟ ଖରାପ

ପଡ଼ିଥିଲ । ମୋର ପାଖିରୁ ମିଛ ବାହାରିଗଲ । ମୁଁ କହିଲି—ନା, ଏ ପଞ୍ଜାବୀଟି ଆଦୌ ରାମନାଥର ନୁହେଁ । ଏହା ମୋର । ଜଣେ ଯୁବକ ତତ୍‌କ୍ଷଣାତ୍ ବ୍ୟଙ୍ଗାତ୍ମକ କଣ୍ଠରେ କହିଲେ—କିନ୍ତୁ ରାମନାଥ ଏହାକୁ କାଶ୍ମୀର ଷ୍ଟୋର୍ସରୁ କିଣି ଆଣିଛି—ମୁଁ ମଧ୍ୟ ଦେଖିଛି ।

ମୁଁ ନିଜକୁ ରକ୍ଷା କରିବା ପାଇଁ ଯଥାସାଧ୍ୟ ଚେଷ୍ଟା କରି ଦମ୍ଭରେ କହିଲି—ତା ନିଶ୍ଚୟ; ମାତ୍ର ରାମନାଥ ତାକୁ ମୋ ଲାଗି କିଣି ଆଣିଥିଲା । ମୁଁ ସେଥିପାଇଁ ତାକୁ ଟଙ୍କା ଦେଇଥିଲି । ଜଣେ ପଚାରିଲେ, କେତେ ଟଙ୍କା ଦେଇଥିଲେ ଆପଣ ? ସମସ୍ତେ ଅତଃପର ମୋ ଚାରିପଟେ ବେଢ଼ିଯାଇ ମୋତେ ଛୁଇଁଲେଇବା ଢଙ୍ଗରେ ଗୋଟିଏ ସ୍ୱରରେ ପଚାରି ଚାଲିଲେ—ହଁ, କୁହନ୍ତୁ—କେତେ ଟଙ୍କା ଦେଇଥିଲେ ? ସେମାନେ ପଚାରୁଥାନ୍ତି ଓ ହସି ହସି ମୋତେ ଛୁଇଁଲାଉଥାନ୍ତି ।

ମୋ ପାଟି ଖିଳ ମାରିଗଲା । ମୁଁ ଖୁବ୍ ନର୍ଭସ ହୋଇଗଲି । ମୋର ଆଶଙ୍କା ହେଲା—ମୁଁ ବୋଧେ ମୂର୍ଚ୍ଛିତ ହୋଇଯିବି । ମୁଁ ଈଶ୍ୱରଙ୍କୁ ମନେ ମନେ ଡାକୁ ଡାକୁ ନାଟକୀୟଭାବେ ଶ୍ରୀମାନ୍ ରାମନାଥ କୁଆଡ଼ୁ ଆସି ହଠାତ୍ ପହଞ୍ଚିଗଲେ ଏବଂ ସମସ୍ତଙ୍କୁ ଚୁପ୍ କରିଦେଇ ପଚାରିଲେ—କଣ ? କଣ ? କଥା କଣ ? ଜଣେ ଆଖି ଟିପିକି ଦାନ୍ତ ଝିଙ୍କୁଟି ପଚାରିଲା—ରାମନାଥ ! ଏଇ ପଞ୍ଜାବୀଟି କାହାର ? ତୁମର ସାର୍ ପିନ୍ଧିଛନ୍ତି ? ରାମନାଥ ତ ବନା ହଂଧାରେ ସତ କଥାଟି ପରି କହିଦେଲେ—କାହିଁକି ? ଏ କେମିତି ଅଖାଡ଼ୁ ପ୍ରଶ୍ନ, ପଞ୍ଜାବୀଟା ସାର୍ ପିନ୍ଧିଛନ୍ତି ସାର୍‌ଙ୍କର । ଜଣେ ମଲିନ ପଡ଼ିଯାଇ କହିଲା—କିନ୍ତୁ ତୁମେ ତ ପଞ୍ଜାବୀଟି କାଲି କାଶ୍ମୀର ଷ୍ଟୋର୍ସରୁ କିଣିଥିବାର ଆମେ ଦେଖିଛୁ । ରାମନାଥ ଆଖି ଟିପିକି ଜୋର୍ ଗଳାରେ କହିଲେ—ଆଚ୍ଛା କଥା । କ'ଣ ହେଲା ସେଇଠୁ ? ସାର୍‌ଙ୍କର କୋଉ ଜିନିଷ ଭଲ ମୁଁ କିଣିକରି ନ ଆଣେ ? ଦାନ୍ତକାଠି ସୁଦ୍ଧା । ଜଣେ ତଥାପି ବଦ୍ରୂପ କଲା—ପଇସା କିଏ ଦିଏ ? ଗୁରୁ ନା ଶିଷ୍ୟ ।

ଏ କଥାରେ ରାମନାଥ ସତକୁ ସତ ଚିଡ଼ିଉଠିଲେ ଏବଂ ସମସ୍ତଙ୍କୁ କଠୋର ଭର୍ତ୍ସନା କରି କହିଲେ—ତୁମେମାନେ କେତେ ଅଭଦ୍ର ! ସାର୍‌ଙ୍କୁ

ତୁମେମାନେ କ'ଣ ମନେ କରୁଛ ? ସେ କୌଣସି ଛାତ୍ରଠାରୁ ପାନଖଣ୍ଡିଏ ବି ଗ୍ରହଣ କରନ୍ତି ନାହିଁ, ବରଂ ଆମେ ତାଙ୍କଠାରୁ ବହୁଥର ପଇସା ଆଣି ଜଳଖିଆ ଖାଇଛୁ । ତୁମେମାନେ ଏମନ୍ତ ବଜାଙ୍କଙ୍କ ପରି କ'ଣ ବ୍ୟବହାର କରୁଛ ? ସମସ୍ତେ ସେତିକିରେ ଚୁପ୍ ହୋଇଗଲେ । ମାତ୍ର ମୁଁ ସେଠାରୁ ସଙ୍ଗେ ସଙ୍ଗେ ତଳକୁ ମୁହଁ ପୋତି ବାହାରିଗଲି, କୋଠରୀରେ ପହଞ୍ଚି ଖଟ ଉପରେ ହାଲିଆ ହୋଇ ପଡ଼ିଗଲି । ଶିକ୍ଷକ ଜୀବନରେ କେବେ ଥରେ ବି ଅପ୍ରିୟ କହିନାହିଁ । କେଉଁ ଦୁର୍ଭାଗ୍ୟକୁ ଆଜି ଏ ପାପ ମୋ ତୁଣ୍ଡକୁ ପଶି ଆସିଲା । ହେ ଭଗବାନ !! ଅପମାନ ଓ ଅନୁଶୋଚନାରେ ମୋର ଅନ୍ତର ଦଗ୍ଧ ହୋଇଗଲା । ମୋର ଆଖିକୁ ଲୁହ ଆସିଗଲା । ଶ୍ରୀମାନ୍ ରାମନାଥ ଉପଯୁକ୍ତ ଛାତ୍ର ।('ଗୁରଦମ୍ପତ ଗୁରୁ ଦୋଷାନ୍ ଇତ ଛାତ୍ରଃ ।' ଠିକଣା ବେଳରେ ସେ ମୋର ସମ୍ମାନ ରକ୍ଷା କଲେ,)ମାତ୍ର ଏବେ ମୁଁ ତାଙ୍କ ଆଗେ ମୋର ଏହି ମିଥ୍ୟାଭାଷୀ କପଟାଚ୍ଛନ୍ନ ମୁଖକୁ ଦେଖାଇବି କପରି ? ବରଂ ଏଇ ମୁହୂର୍ତ୍ତରେ ମୋର ମୃତ୍ୟୁ ହୋଇଗଲେ ରକ୍ଷା ପାଇଯାନ୍ତି ! ମୁଁ ଏବଂବିଧ ଅନୁତାପାନଳରେ ଦଗ୍ଧ ହେଉଅଛି, ଏମନ୍ତ ସମୟରେ ଶ୍ରୀମାନ୍ ରାମନାଥ ଆସି ପହଞ୍ଚିଗଲେ । ତାଙ୍କୁ ଆସିବାର ଦେଖି ମୁଁ ଲଜ୍ଜାରେ ତକିଆରେ ମୁହଁମାଡ଼ି ଶୋଇଗଲି । ମାତ୍ର ରାମନାଥ କୋଠରୀର କବାଟ ଭିତରପଟୁ କିଳିଦେଇ ହଠାତ୍ ମୋର ପାଦ ଦୁଇଟିକୁ ଧରି ତାଙ୍କର ମୁଣ୍ଡରେ ଲଗାଇଲେ । ମୋର ସର୍ବାଙ୍ଗରେ କିଏ ଯେପରି ନିଆଁ ଲଗାଇଦେଲା !! ଆଶ୍ଚର୍ଯ୍ୟ କଥା, ସେହି ମୁହୂର୍ତ୍ତରେ ତାଙ୍କ ପ୍ରତି ମୋର ମନ ଭିତରେ ଗୋଟାଏ ବିରୋଧ ଭାବ କୁଆଡ଼ୁ ଆସି ପଶିଗଲେ । ମୋର ପାପ ପାଇଁ ରାମନାଥ ହିଁ ଶେଷରେ ଦାୟୀ ଅଟେ । ରାମନାଥ କିନ୍ତୁ ମୋର ପାଦ ଧରି ଅତି ଧୀର ଓ ନମ୍ର କଣ୍ଠରେ ଡାକିଲେ—'ସାର୍' !!! ମୁଁ ମନେ ମନେ ଆହୁରି କ୍ରୁଦ୍ଧ ହୋଇଉଠିଲି । ମୋର ମନେହେଲା ଉଠିକରି ତା ଗାଲରେ ଠିକ୍‌କରି ଚଟକଣା ମାରିଦିଏ । ବଦ୍‌ମାସ କାହିଁକା—ଚୋର ମିଥ୍ୟାବାଦୀ । ତା'ର ଠାରୁ ମୋ ଦେହକୁ ମିଥ୍ୟା ବେଗ ପରି ସଂକ୍ରମିତ ହୋଇଗଲା । ପୁଣି ମୋର ଆକସ୍ମିକ ମିଥ୍ୟା ଭାଷଣକୁ ଆହୁରି ମିଥ୍ୟା ରଙ୍ଗରେ ରଞ୍ଜିତ କରି ତୁ ତୋର ନିଜ ଲାଗି ଓ ମୋ ଲାଗି କି ଅନୈତିକ ପ୍ରତିକ୍ରିୟା ସୃଷ୍ଟି କରିଦେଲୁ ଜାଣୁ ? ମୁଁ ତାକୁ ମାରିବା ଲାଗି ପ୍ରାୟ ଉଦ୍ୟତ ହୋଇ ଉଠିଗଲି ଏବଂ

ରାମନାଥକୁ ଚାହିଁବାମାତ୍ରେ ସେ ମୋର ମୁହଁକୁ ନ ଚାହିଁ ଚଞ୍ଚଳଭାବେ ମୋର ପାଦ ଦୁଇଟାକୁ କୁଣ୍ଢାଇ ଧରି କମ୍ପିତ ନମ୍ର କଣ୍ଠରେ କହିଲେ—

ସାର୍, କ୍ଷମା କରିବେ । ଆପଣ ଭାବିଥିବେ ମୁଁ ସେଠି ପିଲାମାନଙ୍କ ଆଗରେ ମିଥ୍ୟା କହିଛି, ମାତ୍ର ମୋତେ ବିଶ୍ୱାସ କରନ୍ତୁ ସାର୍ ! ମୁଁ ଏଇ ପଞ୍ଜାବୀଟି କାଲି ଆପଣଙ୍କ ଲାଗି ଦୋକାନରୁ କିଣି ଆଣିଥିଲି । ସାର୍ ! ମୋତେ ଶେଷ ଥର ପାଇଁ ବିଶ୍ୱାସ କରନ୍ତୁ । ମୁଁ ଆଦୌ ମିଥ୍ୟା କହୁନାହିଁ ସାର୍ । ଛାତ୍ର ହିସାବରେ କ'ଣ ମୋର ଆପଣଙ୍କୁ ଏତକ ଦାନ କରିବାର ଅଧିକାର ନାହିଁ ?

ମୁଁ ଆହୁରି ଏକ ଧନ୍ଦାରେ ପଡ଼ିଗଲି । ବିସ୍ମିତ ହୋଇ ପଚାରିଲି— କିନ୍ତୁ ତୁମେ ମୋତେ ଏ କଥା କାଲିଠାରୁ କହିନାହଁ କାହିଁକି ? ରାମନାଥ ସାଙ୍ଗେ ସାଙ୍ଗେ ଉତ୍ତର ଦେଲେ—ସାର୍ ! କହିବି କହିବି ହେଉଥିଲି—ମାତ୍ର ସାହସ ପାଉ ନ ଥିଲି ଓ ସୁଯୋଗ ଖୋଜୁଥିଲି ।

(ସୁଧୀବୃନ୍ଦ ! ଆପଣମାନେ ବୁଝନ୍ତୁ)—ଶ୍ରୀମାନ୍ ରାମନାଥଙ୍କର ଏହି କଥା ଶୁଣି ଅବଶ୍ୟ ମୋର ମନୋଭାବ ଟିକିଏ ନରମି ଗଲା । ମାତ୍ର ତଥାପି ମଧ୍ୟ ମୋର ତାଙ୍କ କଥାରେ ପ୍ରତ୍ୟୟ ହେଲା ନାହିଁ; ବରଂ ସେ ଘୋର ମିଥ୍ୟାବାଦୀ ଓ କପଟାଚାରୀ ବୋଲି ମୋର ଅନ୍ତର ଭିତରେ ଧାରଣା ଆହୁରି ତୀବ୍ର ଓ ଦୃଢ଼ୀଭୂତ ହୋଇଗଲା ଏବଂ ସେ ଧାରଣା ଅଦ୍ୟାବଧି ମଧ୍ୟ କଟିନାହିଁ ।

ସଜ୍ଜନମଣ୍ଡଳୀ ! ଉତ୍କଳ ସାହିତ୍ୟାକାଶରେ କୀର୍ତ୍ତିମାନ ଚନ୍ଦ୍ର ଶ୍ରୀମାନ୍ ରାମନାଥ ଏଠାରେ ଆମ୍ଭମାନଙ୍କଠାରୁ ଅର୍ଘ୍ୟ ନେବା ଲାଗି ସ୍ୱୟଂ ଉପବେଶନ କରିଛନ୍ତି । ସେ ଜାଣିଥିବେ ଯେ ମୁଁ ତାଙ୍କ ସମ୍ପର୍କରେ ବିନ୍ଦୁଏ ମାତ୍ର ମିଥ୍ୟା ଭାଷଣ କରୁନାହିଁ । ମୋ ଜୀବନରେ ସେଇ ଗୋଟିଏ ଥର ମାତ୍ର ମିଥ୍ୟା କହିଛି । ମିଥ୍ୟାବାଦକୁ ମୁଁ ଭୟଙ୍କରଭାବେ ଘୃଣା କରେ, କିନ୍ତୁ ଶ୍ରୀମାନ୍ ରାମନାଥଙ୍କ କୀର୍ତ୍ତି-ଉଜ୍ଜ୍ୱଳ ଚରିତ୍ରରେ ଏହି ମିଥ୍ୟା ଭାଷଣ ସାମାନ୍ୟ କଳଙ୍କ ମାତ୍ର ହେଲେହେଁ—ପୂର୍ଣ୍ଣଚନ୍ଦ୍ର ସଦୃଶ ସେ ତାଙ୍କର ଯଶ-କିରଣରେ ଚତୁର୍ଦ୍ଦିଗକୁ ସୁଧାମୟ କରୁଅଛନ୍ତି, ମତ୍ ସଦୃଶ କ୍ଷୀଣବୃଦ୍ଧ, ସ୍ୱଳ୍ପଜ୍ଞାନୀ ଅବସରପ୍ରାପ୍ତ ସାମାନ୍ୟ ଶିକ୍ଷକ ପକ୍ଷରେ ତାଙ୍କର ଅମର

କୀର୍ତ୍ତିଗୁଡ଼ିକର ମୂଲ୍ୟାଙ୍କନ କରିବା ଅସମ୍ଭବ ଅଟେ । ମୋତେ ମିଥ୍ୟା ଓ କପୋଳକଳ୍ପିତ ବୋଧ ହେଲେହେଁ—ତାଙ୍କର ସେହି ମିଥ୍ୟା ପ୍ରତିଷ୍ଠିତ ବାକ୍ୟାବଳୀ ଯେ ଦେଶ ବିଦେଶର ମନୀଷୀମାନଙ୍କୁ ମହାନ୍ ସତ୍ୟର ଆଲୋକ ଦେଉଅଛି—ତାହାହିଁ ତାଙ୍କର ଜଣେ ସାମାନ୍ୟ ବାଲ୍ୟଶିକ୍ଷକ ସ୍ୱଭାବରେ ମୋ ପକ୍ଷରେ ମହାନ୍ ଗୌରବର କାରଣ ଅଟେ । ଆଜ ମୁଁ ମୋର ସର୍ବାନ୍ତଃକରଣରେ ଆଶୀର୍ବାଦ କରୁଛି—ଶ୍ରୀମାନ୍ ରାମନାଥଙ୍କର ମହତ୍ତ୍ୱ କୀର୍ତ୍ତି ଆହୁରି ଉଜ୍ଜ୍ୱଳ ଓ ଆହୁରି ମହାନ୍ ଗୁଣ ସମ୍ପୂର୍ଣ୍ଣ ହେଉ । ଈଶ୍ୱର ତାଙ୍କୁ ଉଜ୍ଜ୍ୱଳ ସ୍ୱାସ୍ଥ୍ୟ ଓ ପରମାୟୁ ପ୍ରଦାନ କରନ୍ତୁ ।

ଶେଷରେ—ମତ୍ ସଦୃଶ ସାମାନ୍ୟ ଶିକ୍ଷକଙ୍କୁ ଏହି ଆସନରେ ବସାଇଥିବାରୁ ସମସ୍ତଙ୍କୁ ଧନ୍ୟବାଦ ପ୍ରକାଶ କରି ସମସ୍ତଙ୍କର ଶୁଭ କାମନା ଜ୍ଞାପନପୂର୍ବକ ସଭାଭଙ୍ଗର ନିର୍ଦ୍ଦେଶ ଦେଉଅଛି । ନମସ୍କାର ।

# ସବୁ ଶାନ୍ତ, ସବୁ ସୁନ୍ଦର

ଅଧ୍ୟାପକ ଜଗନ୍ନାଥ ମହାନ୍ତି

ସୂର୍ଯ୍ୟକାନ୍ତ ଜଣେ ଡାକ୍ତର କିମ୍ବା ଇଞ୍ଜିନିୟର ହେବାକୁ ଆଶା କରି ବିଜ୍ଞାନ ପଢ଼ିଲେ । ପରେ ସେଇ ଇଞ୍ଜିନିୟରିଂ ବାଗରେ ହିଁ ଆଗେଇଲେ । ଦେଶର ଅନୁନ୍ନତ ଅଞ୍ଚଳରେ ଘରଦ୍ୱାର, ରାସ୍ତାଘାଟର ଉନ୍ନତି କରି ଲୋକମାନଙ୍କର ଅସୁବିଧା ଦୂର କରିବା ତାଙ୍କର ଲକ୍ଷ୍ୟ । କିନ୍ତୁ ସେ କୃତିତ୍ୱର ସହିତ ଇଞ୍ଜିନିୟରିଂ ପାସ୍ କରି ଦେଖନ୍ତି, ତାଙ୍କ ପାଇଁ କୌଣସି ସୁଯୋଗ ନାହିଁ । ବହୁ ଯୁବକ ଇଞ୍ଜିନିୟରିଂ ପାସ୍ କରି ବେକାର ହୋଇ ବସିଛନ୍ତି । ସରକାରୀ କିମ୍ବା ବେସରକାରୀ କୌଣସି ସଂସ୍ଥାରେ, ଦେଶର ଉପକାର କରିବା ତ ଦୂରର କଥା, ନିଜର ଓ ନିଜ ପରିବାରର ଅନ୍ନସଂସ୍ଥାନ କରିବା ପାଇଁ କିଛି ଉପାୟ ନାହିଁ । ସ୍ୱାଧୀନ ଭାବରେ କିଛି କରିବା ପାଇଁ ତାଙ୍କର ମନ । କିନ୍ତୁ ସେଥିପାଇଁ ପ୍ରଚୁର ମୂଳଧନ ଆବଶ୍ୟକ । ସୂର୍ଯ୍ୟକାନ୍ତ ଇଞ୍ଜିନିୟର ହୋଇ ପରିବାରର ଅନ୍ଧ ଦିଗନ୍ତରେ ନୂତନ ସୂର୍ଯ୍ୟ ଭାବରେ ଉଇଁ ଉଠିବେ—ଏହି ଆଶାରେ ତାଙ୍କ ପିତା ମଧ୍ୟ ଗତ ଚାରି ପାଞ୍ଚ ବର୍ଷ ଭିତରେ ବହୁ ଅର୍ଥ ବ୍ୟୟ କରି ସର୍ବସ୍ୱାନ୍ତ ହୋଇଛନ୍ତି । ଏବେ ବେକାର ଇଞ୍ଜିନିୟର ପୁଅକୁ ସାହାଯ୍ୟ କରିବାକୁ ତାଙ୍କର ଆଉ କିଛି ସମ୍ବଳ ନାହିଁ ।

ସୂର୍ଯ୍ୟକାନ୍ତ କର୍ମଯୋଗାଣ ସଂସ୍ଥାରେ ନିଜର ନାମ ରେଜେଷ୍ଟ୍ରୀ କରିଥିଲେ । ବହୁଦିନ ପରେ ଶିକ୍ଷକତା ଚାକିରି ପାଇଁ ଗୋଟିଏ ସାକ୍ଷାତ୍କାରରେ ଯୋଗଦାନ କରିବା ପତ୍ର ପାଇଲେ । ସରକାରୀ ସ୍କୁଲ; ଦରମା ପତ୍ର ଓ ଚାକିରି ନିରାପତ୍ତା ଭଲ । ସୂର୍ଯ୍ୟକାନ୍ତ କେତେ ଆଶାରେ ସାକ୍ଷାତ୍କାରରେ ଯୋଗଦେଲେ । ମାତ୍ର ସରକାରୀ ସ୍କୁଲ ହୋଇଥିବାରୁ ସେଠାରେ ତାଲିମ ଉପରେ ଖୁବ୍ ଗୁରୁତ୍ୱ । ସୂର୍ଯ୍ୟକାନ୍ତଙ୍କର ଯୋଗ୍ୟତା ଭଲ ଥିଲେହେଁ ତାଲିମ ଅଭାବରୁ ସେଠାରେ ସ୍ଥାନ ପାଇ ପାରିଲେ ନାହିଁ ।

ବହୁ ଚେଷ୍ଟାରେ ସୂର୍ଯ୍ୟକାନ୍ତ ଗୋଟିଏ ଘରୋଇ ସ୍କୁଲରେ ଶିକ୍ଷକତା କରିବା ପାଇଁ ସୁଯୋଗ ପାଇଲେ । ତା'ର ସେକ୍ରେଟାରୀ ଓ ହେଡ଼ମାଷ୍ଟର ଦୟାପରବଶ ହୋଇ ସୂର୍ଯ୍ୟକାନ୍ତଙ୍କର ଉଚ୍ଚ କୃତିତ୍ୱ ଯୋଗୁ ସେଠାରେ ସ୍ଥାନ ଦେଲେ । କିନ୍ତୁ ନିମ୍ନ ଉପାଧିଧାରୀ ଭାବରେ ତାଙ୍କୁ ନିମ୍ନ ବେତନ ହିଁ ମିଳିଲା । ତେବେ ସହରୀ ସ୍କୁଲ ହୋଇଥିବାରୁ ଟିଉସନରୁ କିଛି ପାଇବେ ଆଶା କରି ସୂର୍ଯ୍ୟକାନ୍ତ ସେଠାରେ ଯୋଗଦେଲେ ।

ଯୋଗଦାନ କରିବା ଦିନ ସ୍କୁଲର ପ୍ରଧାନ ଶିକ୍ଷକ ପ୍ରାରମ୍ଭିକ ଉପଦେଶ ଦେଇ କହିଥିଲେ—ସୂର୍ଯ୍ୟକାନ୍ତ ! ଏଇ ସ୍କୁଲଟିର ବିଶେଷତ୍ୱ ତୁମେ ଜାଣିଥିବ । ସହରର ଯେତେ ଧନୀ ଓ ଉଚ୍ଚ କର୍ମଚାରୀଙ୍କର ପିଲା ଦୁଷ୍ଟାମି କରି, ବଦ୍‌ମାସି କରି ଅନ୍ୟ ସ୍କୁଲରେ ବାରମ୍ବାର ଫେଲ୍ ହୁଅନ୍ତି, ସେହିମାନେ ଏଠାରେ ଆଶ୍ରୟ ନିଅନ୍ତି । ଅବଶ୍ୟ ଗରିବ ପିଲା କେତେକ ଏଠାରେ ପଢ଼ନ୍ତି । ତେବେ ସେମାନଙ୍କ ସଂଖ୍ୟା କମ୍ ଓ ସ୍କୁଲର ଆର୍ଥିକାବସ୍ଥା ସେମାନଙ୍କ ଉପରେ ନିର୍ଭର କରେ ନାହିଁ । ବରଂ ସେମାନେ ସ୍କୁଲରୁ ସାହାଯ୍ୟ ପା'ନ୍ତି, ସେମାନଙ୍କର ଦରମା ଅଧା ବା ପୂରା ଛାଡ଼ ହୁଏ । ତେଣୁ ଅନ୍ୟମାନେ ହେଉଛନ୍ତି ସ୍କୁଲର ସମ୍ବଳ ଆଉ ଆମର ସମସ୍ୟା । ସେମାନଙ୍କ ମଧ୍ୟରୁ କେତେକ ବହୁ ଦିନରୁ ଯୁବକ ହୋଇ ଗଲେଣି । ଛାତ୍ରାବସ୍ଥାକୁ ବଜାୟ ରଖି ବିଭିନ୍ନ କ୍ରୀଡ଼ା ପ୍ରତିଯୋଗିତାରେ ଯୋଗଦେବା, ଦୋକାନୀମାନଙ୍କ ସହିତ ଗଣ୍ଡଗୋଳ କରିବା, ବସ୍, ଟ୍ରେନ୍‌ରେ ଛାଡ଼ ଦାବି କରିବା ଇତ୍ୟାଦି ହେଉଛି ସେମାନଙ୍କର ପ୍ରଧାନ କାମ । ତୁମେ ତ ଯୁବକ । ଜଗିରଖି ସବୁ ଚଳାଇବ ।

ବୃଦ୍ଧ ପ୍ରଧାନ ଶିକ୍ଷକଙ୍କଠାରୁ ଏପରି କଥା ଶୁଣି ସୂର୍ଯ୍ୟକାନ୍ତ ପ୍ରଥମେ ବଡ଼ ହତାଶ ହୋଇପଡ଼ିଲେ । ସେ ପଚାରିଲେ—ସେମାନେ ତ କିଛି ପାଠ ପଢ଼ୁ ନ ଥିବେ ? ଶ୍ରେଣୀରେ ସବୁ ପ୍ରକାର ଚଗଲାମି କରୁଥିବେ ? ପରୀକ୍ଷା ଫଳ କିପରି ହୁଏ ?

ପ୍ରଧାନ ଶିକ୍ଷକ କହିଲେ—ଠିକ୍ କଥା ତୁମେ ପଚାରିଲ । ପ୍ରକୃତରେ ତୁମର ଏହା ଆଶଙ୍କା ହେବା ସ୍ୱାଭାବିକ । ମାତ୍ର ପରୀକ୍ଷା ଫଳ ମନ୍ଦ ହୁଏନାହିଁ । କଳେ ବଳେ କୌଶଳେ ପ୍ରତି ବର୍ଷ କେତେକ ତ ଖସିପା'ନ୍ତି । ଗରିବ ପିଲାମାନେ ମଧ୍ୟ ଭଲ ଉଦ୍ଭଜନ ପା'ନ୍ତି । ଆଉ ଶ୍ରେଣୀ

ବା ସ୍କୁଲରେ ଦୁଷ୍ଟାମି କରିବା ତ କିଛି ନୂଆ କଥା ନୁହେଁ । ଏହା ଆଜିକାଲି ସବୁ ସ୍କୁଲରେ ହେଉଛି । ଏହା ତ ଏ ଯୁଗରେ ପିଲଙ୍କ ଅଭ୍ୟାସ ଆଉ ପ୍ରକୃତି ! ତୁମେ ତ ଯୁବକ ! ଅବସ୍ଥାକୁ ଦେଖି ବ୍ୟବସ୍ଥା କରିବ ।

ସୂର୍ଯ୍ୟକାନ୍ତ ହସି ପକାଉଥିଲେ । ହସକୁ ଚାପିରଖି ସେ କହିଲେ—ହଁଉ ସାର୍, ଧନ୍ୟବାଦ ! ମୁଁ ମୋର କର୍ତ୍ତବ୍ୟ କରିବ । ଦେଖାଯାଉ କ'ଣ ହେଉଛି ।

ପ୍ରଧାନ ଶିକ୍ଷକ କହିଲେ—ଠିକ୍ କଥା । କର୍ତ୍ତବ୍ୟ ତୁମେ କରିବା-ମାତ୍ରେ ସେଥିରେ ବାଧା ଆସିଲେ ବ୍ୟସ୍ତ ହୋଇ ପଡ଼ିବ ନାହିଁ । ଧୈର୍ଯ୍ୟ ଧରିବ ।

ସେଦିନ ସେ ପ୍ରଥମେ ଦଶମ ଶ୍ରେଣୀକୁ ଗଲେ । ନିଜର ନାମ ଓ ଯୋଗ୍ୟତା ବିଷୟରେ ପରିଚୟ ଦେଇ ପିଲମାନଙ୍କର ନାମ ମଧ୍ୟ ଗୋଟି ଗୋଟି କରି ପଚାରି ବୁଝିଲେ । ଜଣଙ୍କ ପରେ ଜଣେ ପିଲ୍ କିଏ ବସି କିଏ ଠିଆ ହୋଇ କହିଗଲେ । ତା'ପରେ ସେମାନେ ନାନା ପ୍ରକାର ପ୍ରଶ୍ନ ପଚାରିବାରେ ଲଗିଲେ । ଜଣଙ୍କ ସହିତ ଅନ୍ୟ ଜଣେ, ଜଣଙ୍କର କହିବା ନ ସରୁଣୁ ଆଉ ଜଣେ ସୂର୍ଯ୍ୟକାନ୍ତଙ୍କୁ ସେ ଇଞ୍ଜିନିୟରିଂ ପାସ୍ କରି ଶିକ୍ଷକ କାହିଁକି ହେଲେ, ଏହି ସ୍କୁଲକୁ କାହିଁକି ଆସିଲେ, ଘର ପାଖରେ ଆଉ ସ୍କୁଲ ଅଛି କି ନାହିଁ, ତାଙ୍କ ଗାଁକୁ ଯିବାକୁ ରାସ୍ତା ଅଛି କି ନାହିଁ ପ୍ରଭୃତି ପ୍ରଶ୍ନ ପଚାରିବାରେ ଲଗିଗଲେ ।

ସୂର୍ଯ୍ୟକାନ୍ତ ଧୀରସ୍ଥିର ଭାବରେ ସବୁ ଉତ୍ତର ଦେଉଥାନ୍ତି । ପିଲମାନଙ୍କ ମଧ୍ୟରେ ହସ, ଆନନ୍ଦ ଫୁଟି ଉଠୁଥାଏ । ସେମାନଙ୍କ ମଧ୍ୟରେ ଜଣେ ଜଣେ ଥଟ୍ଟା ବା ପରିହାସ ମଧ୍ୟ କରୁଥାନ୍ତି ।

ଶେଷରେ ସୂର୍ଯ୍ୟକାନ୍ତ କହିଲେ—ପିଲମାନେ, ତୁମମାନଙ୍କର ପ୍ରଶ୍ନଗୁଡ଼ିକରେ ମୁଁ ଭାରି ଖୁସି ହେଲି । ଯାହାହେଉ, ତୁମେମାନେ ଏତେ ବିଷୟରେ ଚିନ୍ତା କରି ପାରୁଛ, ଦୁନିଆଁର ସମସ୍ୟା ବିଷୟରେ ଏତେ କଥା ଜାଣି ପାରୁଛ । ଏତେ ଦିଗରେ ତୁମେ ବୁଦ୍ଧି ଖଟାଇ ପାରୁଛ, ଏହା ବଡ଼ ଆଶା ଓ ଆନନ୍ଦର କଥା, କିନ୍ତୁ କିପରି ଭାବରେ ପ୍ରଶ୍ନ ପଚାରିବା କଥା, କେଉଁପରି ଆଚରଣ ଜଣେ ଆଗନ୍ତୁକଙ୍କ ପ୍ରତି କରିବା କଥା,

ତୁମ୍ଭେମାନେ ତାହା ଜାଣ୍ଡନାହିଁ । ଦୁନିଆଁରେ ବୁଦ୍ଧି ସହିତ ବିବେକ, ଜ୍ଞାନ ସହିତ ଚରିତ୍ର ଦରକାର । ଜଣେ ପ୍ରଶ୍ନ ପଚାରିଲାବେଳେ ଆଉ ଜଣେ ବାଧା ଦେବା ଉଚିତ ନୁହେଁ; ଜଣେ କହିଲାବେଳେ ଆଉ ଜଣେ କହିବା ଠିକ୍ ନୁହେଁ । ଶିକ୍ଷକ ଶ୍ରେଣୀକୁ ଆସିଲେ ବା ଗଲେ ଠିଆ ହୋଇ ତାଙ୍କୁ ସମ୍ମାନ ଦେଖାଇବା ଦରକାର । ଜଣେ ନୂତନ ବ୍ୟକ୍ତି ସମ୍ପର୍କରେ ତୁମେ ଜାଣିବାକୁ ଚେଷ୍ଟା କରିବା ଉଚିତ । ମାତ୍ର ତା ମନରେ କିଛି ଆଘାତ ହେଲାଭଳି ତୁମ୍ଭେ କହିବା ଉଚିତ ନୁହେଁ । ମୁଁ ଆଉ ବେଶି କିଛି କହିବା ଅନୁଚିତ । ତୁମ୍ଭେମାନେ ଆଉ ପିଲା ନୁହଁ । ବଡ଼ ହେଲଣି । ତୁମ୍ଭମାନଙ୍କର ବୁଦ୍ଧି, ବିଚାର ଓ ଦାୟିତ୍ୱଜ୍ଞାନ ବଢ଼ିଲଣି । ସବୁ ବୁଝିପାରିବ । ଧନ୍ୟବାଦ ।

ଏହା କହି ସୂର୍ଯ୍ୟକାନ୍ତ ଶ୍ରେଣୀରୁ ବିଦାୟ ନେଲେ । ପିଲାମାନେ ଠିଆ ହେଲେ । ତା'ପରେ ସେମାନେ ବସି ଶିକ୍ଷକଙ୍କ ବିଷୟରେ ଆଲୋଚନା ଆରମ୍ଭ କରିଦେଲେ । କିଏ କହିଲା—ସେ ଅଳ୍ପ କେତେଦିନ ପାଇଁ ଆସିଛନ୍ତି, ଚାଲିଯିବେ । କିଏ କହିଲା—ରାସ୍ତା ଛଆଣି କରିବାକୁ ପାଇଲେ ନାହିଁ, ମଣିଷ ଛଆଣି କରିବାକୁ ଆସିଛନ୍ତି । କିଏ କହିଲା—ନଗେନ୍, ସାରଙ୍କୁ ଏମିତି ଅପଆ ପ୍ରଶ୍ନ ପଚାରି ପ୍ରଥମରୁ ବିରକ୍ତ କରିଦେଲୁ । ନଗେନ୍ ଉତ୍ତର ଦେଲା—ନା, ସାର୍ କହିଲାବେଳେ ସୁରେନ୍ଦ୍ର ହସୁଥିଲା । ସୁରେନ୍ଦ୍ର କହିଲା—ନା, ମୁଁ ଗୋଟିଏ ପ୍ରଶ୍ନ ପଚାରିଲାବେଳେ, ତୁ ଆଉ ଗୋଟିଏ ପ୍ରଶ୍ନ ପଚାରୁଥିଲୁ । ଏମିତି ପରସ୍ପର ଭିତରେ ଆଲୋଚନା, ସମାଲୋଚନା ଖୁବ୍ ଚାଲିଲା ।

ଶ୍ରେଣୀର ମନିଟର ବିଧୁଶେଖର କହିଲା—ଭାଇମାନେ, ସେ ଆମର ନୂଆ ସାର୍ । ତାଙ୍କୁ ଆମେ ଆଗେ ଅତିଥି ପରି ବ୍ୟବହାର କରିବା କଥା । ସେ ଅଳ୍ପ ଦିନ ପାଇଁ ରହନ୍ତୁ ବା ବେଶି ଦିନ ପାଇଁ ରହନ୍ତୁ, ଯେତେଦିନ ପାଇଁ ରହନ୍ତୁ ପଛେ ସେ ଆମର ଶିକ୍ଷକ । ଆମ ପାଇଁ ଯାହା ଭଲ କଥା, ତାହା କହୁଛନ୍ତି । ତାଙ୍କ କଥା ମାନି ଚଳିଲେ ଆମର ଭଲ । ତେବେ ଆମେ ନିଜେ ଅନ୍ୟକୁ ଦୋଷ ଦେବାରେ ଲାଭ ନାହିଁ । ଆଗକୁ ଆମେ ଭଲ ବ୍ୟବହାର ଦେଖାଇବା ଦରକାର ।

ନଗେନ୍ କହିଲା—ବିଧୁ ତ ନୂଆ ସାର୍‌ଙ୍କର ବଡ଼ ଚେଲା ବନିଗଲଣି । ବାଃ ବାଃ !

ସବୁ ପିଲା ହସି ଉଠିଲେ ।

ଛୁଟି ଘଣ୍ଟା ବାଜିଲା । ସମସ୍ତେ ଘରକୁ ଫେରିଲେ ।

ତା'ପରେ ସୂର୍ଯ୍ୟକାନ୍ତ ଯେତେ ଥର ଶ୍ରେଣୀକୁ ଯାଇଛନ୍ତି, ପିଲାମାନେ ସମସ୍ତେ ଠିଆ ହୋଇଛନ୍ତି । ଜଣେ କହିଲାବେଳେ ଆଉ ଜଣେ ସେଥିରେ ବାଧା ଦେବା ବା ନିଜେ ଆଉ କିଛି କହିବା ସେମିତି ବେଶି ଘଟିନାହିଁ । ମାତ୍ର ସୂର୍ଯ୍ୟକାନ୍ତ ଗୋଟିଏ ପ୍ରଶ୍ନ କଲେ ଆଉ ଗୋଟିଏ ପ୍ରଶ୍ନର ଉତ୍ତର ଦେବା, ନିଜ ନିଜ ଭିତରେ ବ୍ୟଙ୍ଗ ବିଦ୍ରୂପ କରିବାରେ ନଗେନ୍, ଷିପିନ୍, ମଧୁ ପ୍ରଭୃତି ଅଳ୍ପ କେତେକ ପିଲା ହିଁ ଦାୟୀ । ତେବେ ଶ୍ରେଣୀ ଭିତରେ ସେମାନେ ଏକ ସଂଖ୍ୟାନ୍ୟୂନ, ଅବହେଳିତ ଗୋଷ୍ଠୀ । ସେମାନଙ୍କ କଥା କେହି ଶୁଣନ୍ତି ନାହିଁ । ସୂର୍ଯ୍ୟକାନ୍ତଙ୍କର ପଢ଼ାରେ ସେମାନେ ସନ୍ତୁଷ୍ଟ, ତାଙ୍କ ବ୍ୟବହାରରେ ସେମାନେ ମୁଗ୍ଧ ।

ସୂର୍ଯ୍ୟକାନ୍ତ କିନ୍ତୁ ଜାଣିଛନ୍ତି ଏହି ସଂଖ୍ୟାନ୍ୟୂନ ଗୋଷ୍ଠୀକୁ ଅବହେଳା କରିହେବ ନାହିଁ । ସେମାନେ ଭିନ୍ନ କାରଣରୁ ଏମିତି ହୋଇଛନ୍ତି । ସେମାନଙ୍କ ଅସଦାଚରଣ ପାଇଁ ସେମାନେ ଦାୟୀ ନୁହଁନ୍ତି, ସେମାନଙ୍କ ପିତାମାତା, ପରିବାର, ସମାଜ ହିଁ ଦାୟୀ । ତେଣୁ ସେମାନଙ୍କ କଥାକୁ ଅଧିକ ଧୈର୍ଯ୍ୟ ଓ ସହାନୁଭୂତିର ସହିତ ବୁଝିବା ଦରକାର । ଯେଉଁ ଭଲ କାର୍ଯ୍ୟରେ ସେମାନେ ଆନନ୍ଦ ଓ ଆତ୍ମପ୍ରସାଦ ଅନୁଭବ କରିବେ, ଯେଉଁ କାର୍ଯ୍ୟ କଲେ ସେମାନଙ୍କ ମନରୁ ଅବସାଦ ଓ ଅଶାନ୍ତି ଦୂର ହୋଇ ପାରିବ, ସେମିତି କେତେକ କାର୍ଯ୍ୟକ୍ରମର ଆୟୋଜନ କରିବା ଉଚିତ ।

ତେଣୁ ସୂର୍ଯ୍ୟକାନ୍ତ ସ୍କୁଲରେ କ୍ରୀଡ଼ା ପ୍ରତିଯୋଗିତା, ପରିଭ୍ରମଣ, ନାଟକ ମଞ୍ଚସ୍ଥ କରିବା, ପତ୍ରିକା ପ୍ରକାଶନ, ସମାଜସେବା ପ୍ରଭୃତିର ବ୍ୟବସ୍ଥା କରିବାରେ ସବୁ ପ୍ରକାର ଉଦ୍ୟମ କରିଥାନ୍ତି । ଯେଉଁମାନେ ପଢ଼ାପଢ଼ିରେ ବିଶେଷ ଆଗ୍ରହୀ ହୋଇ ନ ଥାନ୍ତି, ସେମାନେ ଏ ସବୁଥିରେ ମନପ୍ରାଣ ଢାଳି ଦିଅନ୍ତି । କ୍ରମେ ସେମାନେ ସ୍କୁଲର ଏସବୁ କାର୍ଯ୍ୟରେ ସକ୍ରିୟ ଭାଗ ନେବା ସଙ୍ଗେ ସଙ୍ଗେ ପଢ଼ାପଢ଼ିରେ ମଧ୍ୟ ମନ ଦିଅନ୍ତି ।

ଶିକ୍ଷକମାନେ ଆଗେ ପିଲମାନଙ୍କୁ ଦୁଷ୍ଟ ବୋଲି ଭାବି ସେମାନଙ୍କୁ ଅବହେଳା କରୁଥିଲେ । ସେମାନଙ୍କର ଦୁଷ୍ଟାମି ଓ ପଢ଼ାପଢ଼ିରେ ଦୁର୍ବଳତା

ଦେଖିଲେ କଠିନ ଦଣ୍ଡ ଦେଉଥିଲେ । ଏହାଦ୍ୱାରା ସେମାନେ ଆହୁରି ପ୍ରତିହିଂସାପରାୟଣ ହେଉଥିଲେ । ଘରୁଆପାଠରେ, ଏମିତିକି ସ୍କୁଲରେ ମଧ୍ୟ ସେମାନଙ୍କୁ ଅଙ୍କ ପରିହାସ କରିବାକୁ ପଛାନ୍ତି ନାହିଁ । ଫଳରେ ଉଭୟ ଶିକ୍ଷକ ଓ ଛାତ୍ର ଭେଦଭାବ, ଅସହିଷ୍ଣୁତା ଓ ରାଗଦ୍ୱେଷର ଏକ ଦୂଷିତ ବାତାବରଣରେ ଚଳୁଥିଲେ । ସୂର୍ଯ୍ୟକାନ୍ତଙ୍କର ଏମିତି ନୂଆ କାର୍ଯ୍ୟକଳାପ ଓ ଆଚରଣରେ ପ୍ରଥମେ ସେମାନେ ଅନାସ୍ଥା ପ୍ରକାଶ କରୁଥିଲେ । କେତେକ ସେଥିରେ ବ୍ୟଙ୍ଗ ବିଦ୍ରୂପ କରୁଥିଲେ । ଦିନକୁ ଦିନ ସୂର୍ଯ୍ୟକାନ୍ତଙ୍କର ଲୋକପ୍ରିୟତାରେ କେତେକେ ଈର୍ଷାପରାୟଣ ହୋଇଉଠିଲେ ।

ସୂର୍ଯ୍ୟକାନ୍ତ ଉଭୟ ସବଳ ଓ ଦୁର୍ବଳ, ଭଲ ମନ୍ଦ ଛାତ୍ରମାନଙ୍କର ଅବସ୍ଥା ଓ ଆବଶ୍ୟକତାକୁ ଜାଣି ପଢ଼ାଇବାକୁ ଚେଷ୍ଟା କଲେ । ସେମାନଙ୍କର ମନ ନେଇ ଆନନ୍ଦ ଉଲ୍ଲାସ ଭିତରେ ପାଠ ପଢ଼ାଇବାରେ ତାଙ୍କର ଆଗ୍ରହ । ଫଳରେ ଅତି ଅମନୋଯୋଗୀ ଛାତ୍ର ମଧ୍ୟ ପାଠ ପଢ଼ିବାରେ ମନଦେବାରେ ଲାଗିଗଲେଣି । ପିଲାମାନେ ବିନା ସଙ୍କୋଚରେ ନିଜ ନିଜର ସନ୍ଦେହ ଓ ପ୍ରଶ୍ନମାନ ପଚାରି ସୂର୍ଯ୍ୟକାନ୍ତଙ୍କଠାରୁ ସବୁ ବୁଝିବାରେ ଲାଗିଲେ । (ତେଣୁ ଆଉ କେହି ତାଙ୍କ ବିଷୟଗୁଡ଼ିକରେ ଟିଉସନ ହେଲେ ନାହିଁ । ଯେଉଁ ଶିକ୍ଷକମାନେ ପୂର୍ବେ ଟିଉସନ କରି ବେଶ୍ ରୋଜଗାର କରୁଥିଲେ, ସେମାନେ ସୂର୍ଯ୍ୟକାନ୍ତଙ୍କ ଉପରେ ଖଡ୍ଗହସ୍ତ । ସେମାନେ ତେଣୁ ସୂର୍ଯ୍ୟକାନ୍ତଙ୍କୁ ସମସ୍ତ ସୁଯୋଗ ଦେଖି ଅପଦସ୍ତ କରିବାକୁ ଚେଷ୍ଟା କରନ୍ତି ।)

ତେବେ ହଠାତ୍ ଦିନେ ସକାଳୁ ସୂର୍ଯ୍ୟକାନ୍ତ ଗୋଟିଏ ଚିଠି ପାଇଲେ । ତାହା ଗୋଟିଏ ସୁପ୍ରତିଷ୍ଠିତ କମ୍ପାନୀରେ ଇଞ୍ଜିନିୟର ଭାବରେ ନିଯୁକ୍ତିପତ୍ର । ମନ ତାଙ୍କର ଭରି ଖୁସି । ଯାହାହେଉ, ଏତେ ଦିନରେ ତାଙ୍କର ଆଶା ପୂର୍ଣ୍ଣ ହେଲା । ସେ ତାଙ୍କର ପ୍ରାପ୍ୟ ପାଇଲେ । ଏଠାର ଦରମାଠାରୁ ସେ ପାଞ୍ଚ ଗୁଣ ଅଧିକ ପାଇବେ । ଘରଭଡ଼ା ପଡ଼ିବ ନାହିଁ । କମ୍ପାନୀ ତରଫରୁ ସୁନ୍ଦର ଘର ପାଇବେ । ଗାଡ଼ି ମଟର, ପିଅନ ଚପରାସୀର ଅଭାବ ନାହିଁ । ସ୍କୁଲକୁ ଯାଇ ପ୍ରଧାନ ଶିକ୍ଷକଙ୍କୁ ସେହା ଜଣାଇଲେ । ଦୁଇଦିନ ପରେ ସେ ବିଦାୟ ନେବାର କଥା । ଛାତ୍ରଛାତ୍ରୀମାନେ ଏହା ଜାଣିବାକୁ ପାଇ ବ୍ୟସ୍ତ, ବିବ୍ରତ ହୋଇ ପଡ଼ିଲେ । ସେମାନଙ୍କ ଭିତରେ ଗୋଟାଏ ଚହଳ ପଡ଼ିଗଲା । ତାଙ୍କର ବିଦାୟ ସଭାର ଆୟୋଜନ ହେଲା ।

ସ୍କୁଲର ସବୁଠୁଁ ଦୁଷ୍ଟ ଛାତ୍ର ନଗେନ୍ ଆଗ ଏଥିରେ ନେତୃତ୍ୱ ନେଲା । ସେ ନିଜେ ଗୋଟିଏ ବିଦାୟ ସଙ୍ଗୀତ ରଚନା କରିଦେଲା । କେତେଜଣ ସାଙ୍ଗସାଥୀଙ୍କୁ ଧରି ସେ ଏହାକୁ ବୋଲିବାକୁ ଠିକ୍ କଲା ।

ବିଦାୟ ସଭା ଅନୁଷ୍ଠିତ ହେଲା । ଫୁଲମାଳ ପିନ୍ଧାଇ ତାଙ୍କୁ ସମ୍ବର୍ଦ୍ଧନା କରାଗଲା । ଛାତ୍ରଛାତ୍ରୀମାନେ ଜଣକ ପରେ ଜଣେ ଆସି ସୂର୍ଯ୍ୟକାନ୍ତଙ୍କର ଗୁଣଗାନ କରି, ତାଙ୍କ ବ୍ୟକ୍ତିତ୍ୱର ପ୍ରଶଂସା କରି କହିଗଲେ । ପ୍ରଧାନ ଶିକ୍ଷକ ତାଙ୍କର ଆସିବା ଦିନ କଥା ସହିତ ସେଦିନର କଥା ତୁଳନା କରି କହିଲେ, ସୂର୍ଯ୍ୟକାନ୍ତଙ୍କର ଚେଷ୍ଟାରେ ସ୍କୁଲ ଅବସ୍ଥାରେ ଆକାଶ ପାତାଳ ପାର୍ଥକ୍ୟ ଆସିଛି । ଯେଉଁମାନଙ୍କୁ ଦୁଷ୍ଟ ବୋଲି ଅବହେଳା କରାଯାଉଥିଲା, କଠିନ ଦଣ୍ଡ ଦେଇ ଦମନ କରିବାକୁ ଚେଷ୍ଟା ହେଉଥିଲା, ଆଜି ସେମାନେ ସୂର୍ଯ୍ୟକାନ୍ତଙ୍କ ମଧୁର ବ୍ୟବହାର ଓ ଉପଯୁକ୍ତ କାର୍ଯ୍ୟକଳାପରେ ଶିଷ୍ଟ ହୋଇଛନ୍ତି । ସମାଜର ବିପଦ ପରିବର୍ତ୍ତେ ସେମାନେ ସମ୍ପଦ ହୋଇଛନ୍ତି । ତାଙ୍କ ପରି ଶିକ୍ଷକ କେବଳ ଶିକ୍ଷାର ଉନ୍ନତି କରିବେ ନାହିଁ, ସମାଜର ମଧ୍ୟ ମଙ୍ଗଳ କରିବେ । ସେ କିନ୍ତୁ ଭବିଷ୍ୟତ ଉନ୍ନତି ଓ ନିଜ ଯୋଗ୍ୟତାର ଉପଯୋଗ ପାଇଁ ବିଦାୟ ନେଉଛନ୍ତି । ଆମକୁ ସେ ଛାଡ଼ି ଯାଉଥିବାରୁ ଆମେ ଯେତିକି ଦୁଃଖିତ, ତାଙ୍କର ଭଲ ପାଇଁ ସେ ଯାଉଥିବାରୁ ଆମେ ସେତିକି ସୁଖୀ । ସେ ଯାଉଥିଲେହେଁ ତାଙ୍କର ଆଦର୍ଶ ଆମକୁ ଆମର କର୍ତ୍ତବ୍ୟ ସମ୍ପାଦନରେ ଦିଗ୍‌ଦର୍ଶନ ଦେଉଥିବ ।

ସୂର୍ଯ୍ୟକାନ୍ତ କହିବାକୁ ଠିଆହେଲେ, କିନ୍ତୁ ସେ ଏତେ ଭାବବିହ୍ୱଳ ହୋଇଥାନ୍ତି ଯେ, କିଛି କହିବାକୁ ତାଙ୍କ ପକ୍ଷରେ କଠିନ ହେଉଥାଏ । ହେଲେ ସେ ନିଜକୁ ସମ୍ଭାଳି ନେଇ କହିଲେ—ମୁଁ ସବୁରି ପାଖରେ ଋଣୀ । ଯେଉଁମାନେ ମୋତେ ଏତେ ପ୍ରଶଂସା କରିଗଲେ, ମୁଁ ସେଥିରେ ହକ୍‌ଦାର ନୁହେଁ । ଏଠାର ପୂଜ୍ୟ ଶିକ୍ଷକ ଓ ସ୍ନେହର ଛାତ୍ରଛାତ୍ରୀମାନେ ହିଁ ମୋତେ ଏ ଦିଗରେ ସବୁ ପ୍ରକାର ସାହାଯ୍ୟ ସହଯୋଗ କରି ଆସିଛନ୍ତି । ମୁଁ ଏଥିରେ ବିଶେଷ ଉପକୃତ ହୋଇଛି ଏବଂ ମୋ କାର୍ଯ୍ୟରେ ସନ୍ତୁଷ୍ଟ ହୋଇଛି, କିନ୍ତୁ ଏବେ ଏହି ମୋର ପ୍ରିୟ ଅନୁଷ୍ଠାନକୁ ଛାଡ଼ି···। ସେ ଆଉ କିଛି କହି ପାରିଲେ ନାହିଁ । ତାଙ୍କର କଣ୍ଠ ବାଷ୍ପରୁଦ୍ଧ ହୋଇଗଲା ।



ତା'ପରେ ବିଦାୟ ସଙ୍ଗୀତ ବୋଲା ହେଲା । ତା'ର କରୁଣ ମୂର୍ଚ୍ଛନା ସମସ୍ତଙ୍କୁ ବ୍ୟଥିତ କଲା । ତା'ର ଭାବ ସମସ୍ତଙ୍କର ହୃଦୟକୁ ସ୍ପର୍ଶ କଲା । ଧୂର୍ଯ୍ୟକାନ୍ତଙ୍କ ନୟନରୁ ଅଶ୍ରୁ ବର୍ଷଣ ହେଲା । ସେ ଆଜି ବିଦାୟ ଭୋଜିରେ ଯୋଗ ଦେବାକୁ ନ ରହି ସିଧା ଘରକୁ ଫେରିଗଲେ । ତାଙ୍କ ମନରେ ଶତ ଭାବନାର ଝଡ଼, ସହସ୍ର ପ୍ରଶ୍ନର କୁହେଳି । ଜୀବନକୁ ଛାଡ଼ି ସେ ଯନ୍ତ୍ର ପାଖକୁ ଯିବେ ? ମଣିଷ ଗଢ଼ିବା ଛାଡ଼ି ଜଡ଼ ପଦାର୍ଥ ଗଢ଼ିବାକୁ ଯିବେ ? ଅର୍ଥ ହିଁ କ'ଣ ମଣିଷର ସବୁ ? ଅଧିକ ବିଳାସବ୍ୟସନ କ'ଣ ତାଙ୍କୁ ପ୍ରକୃତ ସୁଖଶାନ୍ତି ଦେବ ? ଶିକ୍ଷକତାର ସରଳ ବୃତ୍ତିରେ ଯେତେ କେତେ ଗୌରବ ! ଶିକ୍ଷକର ନିରାଡ଼ମ୍ବର ଜୀବନରେ କେତେ ଆତ୍ମପ୍ରସାଦ !

ସେ ବ୍ୟାଗରୁ ନିଯୁକ୍ତିପତ୍ର ଖଣ୍ଡି ବାହାର କଲେ । ମୁହୂର୍ତ୍ତକ ଭିତରେ ତାକୁ ଟିକି ଟିକି କରି ଚିରିଦେଲେ । ତାଙ୍କର ଦେହସାରା ଝାଳ ଝରିଯାଉଛି । ଏବେ ସେ ଆଶ୍ୱସ୍ତ । ମନରେ ଆଉ ଚିନ୍ତାର ଝଟିକା ନାହିଁ । ସବୁ ଶାନ୍ତ, ସବୁ ସ୍ଥିର ଆଉ ସବୁ ସୁନ୍ଦର !!

# ଉତ୍ତର

**ଅଧ୍ୟାପକ ବଭୂତ ପଟ୍ଟନାୟକ**

ଦୋକାନର ଗହଳ ଭିତରୁ ମୁଁ ଠେଲ ପେଲ ବାହାରି ଆସିବାକୁ ଚେଷ୍ଟା କରୁଥିବା ବେଳେ କାହାର ହାତପାପୁଲିର ସ୍ପର୍ଶ ମୋ କାନ୍ଧ ଉପରେ ଅନୁଭବ କରି ପଛକୁ ଫେରି ଚାହିଁଲି ।



ଚାହିଁଲି, କିନ୍ତୁ ଚିହ୍ନି ପାରିଲି ନାହିଁ ।

ମୋ ଆଖିର ଚାହାଁଣୀରୁ ଚିହ୍ନି ପାରୁ ନ ଥିବା ଭାବ ଆବିଷ୍କାର କରି ସେ ମଧ୍ୟ ଅବାକ୍ ହେବାଭଳି କହିଲେ, କ ଶୁଭେନ୍ଦୁ ! ଚିହ୍ନି ପାରୁନାହଁ ! ମୁଁ...ମୁଁ...;

ହଁ, ମଧୁ ପଣ୍ଡିତେ !

ମୁଁ ନମସ୍କାର କଲି । ଚେହେରା ଦେଖି ଚିହ୍ନି ପାରୁ ନ ଥିଲେ ମଧ୍ୟ କଣ୍ଠସ୍ୱରରୁ ବେଶ୍ ଚିହ୍ନି ହୋଇଗଲା । ଅନେକ ଦିନ ପରେ ଦେଖା । ଗୋଟାଏ ଯୁଗ ନୁହେଁ, ବୋଧହୁଏ ଦୁଇଟା ଯୁଗ ପରେ ସାକ୍ଷାତ ।

(ମଧୁ ପଣ୍ଡିତଙ୍କୁ ଚିହ୍ନି ପାରିବାମାତ୍ରେ ମୋ ଆଖିରେ ଆମ ଗାଁ ହାଇସ୍କୁଲ, କମ ଗଛ, ସିଜୁବାଉଦେଙ୍କ ପଦ୍ମପୋଖରୀ, ଆଉ ମଧୁ ପଣ୍ଡିତଙ୍କ ନାସବାଣୀ କଥା ମଧ ମୋର ସ୍ମରଣ ହୋଇଗଲା ।

ସ୍କୁଲରେ ପଢ଼ୁଥିବା ବନ୍ଧୁ ସହପାଠୀଙ୍କ ସହ ବେଳେ ବେଳେ ଦେଖାହୁଏ । କିନ୍ତୁ ସେମାନଙ୍କୁ ଦେଖିଲେ ଏ ସବୁ ଦୃଶ୍ୟର କଥା ମନେ ପଡ଼େ ନାହିଁ । ସେମାନେ ସମସ୍ତେ ସମୟ ସହିତ ବଦଳି ଯାଇଛନ୍ତି । କେବଳ ବଦଳି ନାହାନ୍ତି ମଧୁ ପଣ୍ଡିତେ । ଶୁଖିଲା ଶିଥିଳ କପୋଳ, ଦୀର୍ଘ ନାସା, ଆଖିପତା ଉପରେ କଟା ଦାଗ···ସବୁ ସେମିତି ଅଛି । ମୁଣ୍ଡର ଗୋଟିଏ କେଶ ମଧ ରଙ୍ଗ ବଦଳାଇ ନାହାନ୍ତି । ଊର୍ଦ୍ଧ୍ୱ ପଚାଶ ବୟସ ମଧ ତାଙ୍କ ଆଖିରେ ଚଷମାଟିଏ ପିନ୍ଧାଇ ଦେଇପାରି ନାହିଁ ।

ପଣ୍ଡିତେ ହାତ ଧରି ବାହାରକୁ ଆସିଲେ । କିଛି ସମୟ ମୋ ଆଡ଼କୁ ତୀକ୍ଷ୍ଣ ଦୃଷ୍ଟିରେ ଚାହିଁଲେ । କହିଲେ, ଶୁଭେନ୍ଦୁ ! ତୁମକୁ ଏପରି ଭାବରେ ଦେଖି ମୋର ଯେ କି ଆନନ୍ଦ, ତମେ ସହଜରେ କଳ୍ପନା କରି ପାରିବ ନାହିଁ ।

ଲଜ୍ଜାରେ ମୁଁ ଅଧୋମୁଖ ହୋଇ ରହିଲି ! ନିଜର ଅପ୍ରତିଭ ଭାବ କଟାଇବା ପାଇଁ ପ୍ରଶ୍ନ କଲି, ସାର୍ ! ଆପଣ ହଠାତ୍ ଏ କଟକ ସହରରେ କିପରି ?

ପଣ୍ଡିତଙ୍କ ମୁହଁରେ ଏକ ବିଷଣ୍ଣତାର ଧୂସର ଛାୟା ପ୍ରଲମ୍ବିତ ହୋଇ ଆସିଲା ।

ସେ କହିଲେ, ବୃନ୍ଦାବନେ ବଦଳି ହୋଇଗଲା । ସ୍କୁଲ ସରକାର ହାତକୁ ନେଲେ ତ !

ଗାଆଁ ଛାଡ଼ି ସହରକୁ ଆସିବା ମୋର ପ୍ରାୟ ପନ୍ଦର ବର୍ଷ ହୋଇଗଲା । ପ୍ରଥମେ ପ୍ରଥମେ ଗ୍ରାମର କିଛି କିଛି ଖବର କାନ ପାଖରେ ପହଞ୍ଚୁଥିଲା । ତା ସହିତ ହାଇସ୍କୁଲ ଖବର ମଧ । କିନ୍ତୁ ଗତ ଦଶ ବାର ବର୍ଷ ଧରି ମୁଁ ଆଉ ସେ ସବୁ ଖବର ରଖିନି । ଗାଆଁର କୌଣସି ପଚାଶ ବର୍ଷ ବୟସର ଲୋକକୁ ଦେଖିଲେ ତାଙ୍କୁ ଚିହ୍ନିବାର ମଧ କୌଣସି ଉପାୟ ନାହିଁ । ମୁଁ ମାଇନର ସ୍କୁଲ ଛାଡ଼ି ହାଇସ୍କୁଲରେ ପଢ଼ିଲାବେଳେ

ଯେଉଁ ସ୍କୁଲରେ ମଧୁ ପଣ୍ଡିତେ ସଂସ୍କୃତ ଓ ସାହିତ୍ୟ ପଢ଼ାଉଥିଲେ, ତାହା ଯେ ସରକାର ହାତକୁ ନେଇଛନ୍ତି, ସେ ଖବର ବା ମୁଁ ରଖନ୍ତି କାହିଁକି ?

ମଧୁ ପଣ୍ଡିତେ ନିଜେ ନିଜର ଦୁଃଖ ବର୍ଣ୍ଣନା କଲେ ।

ତୁମେ ଜାଣ, କପରି ସ୍କନ୍ଧରେ କାଷ୍ଠୋପକରଣ ବହନ କରି ମୁଁ ସେ ହାଇସ୍କୁଲକୁ ଠିଆ କରାଇଥିଲି । ମୋର ଘରସଂସାର କହିଲେ ଥିଲା କେବଳ ସେହି ବିଦ୍ୟାଳୟ । ଅଥଚ ସରକାର ସେ ବିଦ୍ୟାଳୟକୁ ହାତକୁ ନେବାମାତ୍ରେ ମତେ ସେଠାରୁ ବିଦାୟ କରିବାକୁ ଯେଉଁ ଗ୍ରାମବାସୀମାନେ ପ୍ରଥମେ ଦରଖାସ୍ତ କଲେ । ଏ ବୟସରେ ଏ ସହରରେ··· !

ସମସ୍ତଙ୍କ ଏମିତି ।

ପବନରେ ଉଡ଼ି ବୁଲୁଥିବା ଧୂଳିକଣାରେ ମଧ୍ୟ ଦୁଃଖ, ଶୋକର ଦାଗ !

ଆମ ଗ୍ରାମଲୋକେ ଆପଣଙ୍କ ବିରୁଦ୍ଧରେ ଦରଖାସ୍ତ କରି ପାରିଲେ ସାର୍ ! ସେ ସ୍କୁଲ ଗଢ଼ିବା ପାଇଁ ଆପଣଙ୍କ କଷ୍ଟ କି ତ୍ୟାଗ କରି ନାହାନ୍ତି !

ହଁ, ମୁଁ କୁଆଡ଼େ ପିଲାମାନଙ୍କୁ ହାତରେ ରଖି ଦଳ ଗଢ଼ିଛି । ଅନ୍ୟ ଯେଉଁ ଶିକ୍ଷକମାନେ ନିୟମିତ ପାଠ ପଢ଼ାଇବାକୁ ସ୍କୁଲକୁ ଆସୁ ନାହାନ୍ତି, ସେମାନଙ୍କୁ ପିଲାଙ୍କ ଦ୍ୱାରା ଅପମାନିତ କରାଉଛି । ଅନ୍ୟମାନଙ୍କ ଭଳି ପିଲାମାନଙ୍କୁ ପରୀକ୍ଷା ଆଗରୁ ପ୍ରଶ୍ନ ସବୁ କହି ଦେଉ ନାହିଁ । ଆରେ ଶୁଭେନ୍ଦୁ ! ଆଜିକାଲି ଯୁଗ ହେଲା ପିଲାମାନଙ୍କୁ ଯେତେ ଦୂରରେ ଦୂରରେ ରଖିବ, ପାଠ ନ ପଢ଼ାଇବ, ତମେ ସେତେ ଭଲ ଶିକ୍ଷକ ! ମୁଁ ପିଲାମାନଙ୍କୁ ପୁଅଭଳି ସ୍ନେହ କରେ, ଶିକ୍ଷକ ଭଳି ଶାସନ କରେ, ଏ ହେଲା ଅପରାଧ !

ମଧୁ ପଣ୍ଡିତେ କଥା ଶେଷ କରି ଶୂନ୍ୟ, ଉଦାସ ଦୃଷ୍ଟିରେ କିଛି ସମୟ ରାସ୍ତାକୁ ଚାହିଁଲେ । ତାପରେ ତାଙ୍କ ଦୁଇ ଆଖିରେ ଅଶ୍ରୁ ଝଲସି ଉଠିଲା । ସେ ନିଜ ଭ୍ରମ ସଂଶୋଧନ କରି ପକାଇଲା ଭଳି କହିଲେ, ଛାଡ଼ ସେ କଥା—ଗ୍ରାମବାସୀମାନଙ୍କୁ ଦୋଷ ଦେଇ କିଛି ଲାଭ ନାହିଁ । ମୋର କେତେକ ସହକର୍ମୀ ଶିକ୍ଷକ—ଯେଉଁମାନେ ପାଠ ନ ପଢ଼ାଇ ଦରମା

ନେବାକୁ ଚାହାଁନ୍ତି—ପିଲାଙ୍କୁ ଆଗରୁ ପ୍ରଶ୍ନ କହିଦେଇ ପରୀକ୍ଷାରେ ପାଶ୍ କରାଇ ଦେବାକୁ ଭଲ ପାଆନ୍ତି—ସେମାନେ ଗ୍ରାମ ଲୋକଙ୍କୁ ଶିକ୍ଷା ଦେଇ ଦରଖାସ୍ତ କଲେ । ତୁମେ ତ ସବୁ ଗ୍ରାମ ଛାଡ଼ ଚାଲି ଆସିଲ—ଗ୍ରାମରେ ଆଉ ଅଛୁ କିଏ ?

ମୁଁ ପଣ୍ଡିତ ମହାଶୟଙ୍କୁ ସାନ୍ତ୍ୱନା ଦେଇ କହିଲି, ସାର୍ ! ଗ୍ରାମ-ଲୋକେ ଆପଣଙ୍କ ନାମରେ ଦରଖାସ୍ତ ଦେଇ ସହରକୁ ବଦଳି କଲେ । ମୁଁ ଗ୍ରାମରେ ରହିବାକୁ ଚାହିଁଥିଲେ ମଧ୍ୟ ସେମାନେ ରଖାଇ ଦେଇ ନ ଥାନ୍ତେ । ଆପଣ କାଠ ବାଉଁଶ କାନ୍ଧରେ ବୋହି ସ୍କୁଲ ତିଆରି କରାଇଥିଲେ । ଦରମା ନ ନେଇ ଗ୍ରାମର ପିଲାଙ୍କୁ ପଢ଼ାଉଥିଲେ । ଆପଣଙ୍କୁ ଏ ବୟସରେ ସେମାନେ ସହି ପାରିଲେ ନାହିଁ । ଆଉ ମୁଁ ଇଚ୍ଛା କରିଥିଲେ ବି ମୋତେ ରଖାଇ ଦେଇ ଥାଆନ୍ତେ ?

ପଣ୍ଡିତେ କନ୍ତୁ ସହଜରେ ବୁଝିବା ଲୋକ ନୁହନ୍ତି ।) ସେ ମୋର ପିଠି ଥାପୁଡ଼େଇ କୋମଳ କଣ୍ଠରେ କହିଲେ, ଗ୍ରାମବାସୀମାନେ ଉତ୍ତମ ଲୋକ । ଯେଉଁମାନେ ସହରରୁ ଯାଇ ସ୍କୁଲରେ ଶିକ୍ଷକତା କରୁଛନ୍ତି, ପିଲାଙ୍କ ଆଗରେ ସିଗାରେଟ୍ ଟାଣୁଛନ୍ତି, ସେମାନେ କ୍ରମଶଃ ସେମାନଙ୍କୁ ଖରାପ ବାଟରେ ନେଉଅଛନ୍ତି । ଶୁଭେନ୍ଦୁ ! ତୁମେ ଜଣେ ସାହିତ୍ୟିକ । ତୁମେ ଯଦି ଗ୍ରାମରେ ଥାଆନ୍ତ, ତାହାହେଲେ ଗ୍ରାମର ଚରିତ୍ର ଏପରି ହୁଅନ୍ତା ନାହିଁ ।

ସନ୍ଧ୍ୟା କ୍ରମଶଃ ପ୍ରଗାଢ଼ ହେଉଥିଲା ।

ରାସ୍ତାର ଲୋକଗହଳ ବୃଦ୍ଧି ପାଉଥିଲା ବନ୍ୟାର ଆବିଳ ଜଳ ଭଳି । ସେହି ସଙ୍କୀର୍ଣ୍ଣ ରାସ୍ତାରେ ଯିବା ଆସିବା କରୁଥିବା କେହି କେହି ଆମ ଦେହ ସହିତ ଧକ୍କା ଖାଉଥିଲେ ।

ମୁଁ କହିଲି, ସାର୍ ! ଆସନ୍ତୁ—ଏ ଭିଡ଼ ଭିତରୁ ବାହାରି ଆଗ ଦୋକାନରେ ଟିକିଏ ଜଳଖିଆ ଖାଇବା । ଆପଣଙ୍କ ସହିତ ବୋଧହୁଏ ପନ୍ଦର, କୋଡ଼ିଏ ବର୍ଷ ପରେ ଦେଖା !

ସ୍କୁଲରେ ମଧ୍ୟ ପଣ୍ଡିତଙ୍କୁ ଆମର ଯେତିକ ଭକ୍ତି ଥିଲା, ସେତିକି ମଧ୍ୟ ଥିଲା ଭୟ । ଭକ୍ତି ଥିଲା, କାରଣ ସେ ଥିଲେ ପ୍ରକୃତରେ ଜ୍ଞାନରେ

ପଣ୍ଡିତ । ଅନର୍ଗଳ ସଂସ୍କୃତ ଶ୍ଳୋକ ଉଚ୍ଚାରଣରେ ତାଙ୍କର ଯେଉଁକ ଦକ୍ଷତା ଥିଲା, ସାହିତ୍ୟ ଆଲୋଚନାରେ ମଧ୍ୟ ଥିଲା ତାଙ୍କର ବିଚକ୍ଷଣତା । ତାଙ୍କ କ୍ଲାସରେ ବସିବା ପାଇଁ କେବେହେଲେ କ୍ଳାନ୍ତି ଆସୁ ନ ଥିଲା । ଭୟ ଥିଲା, କାରଣ ବିଳମ୍ବରେ ସ୍କୁଲ ଆସିବା କଥାକୁ ସେ କେବେହେଲେ ବରଦାସ୍ତ କରୁ ନ ଥିଲେ । ସକାଳ ସାଢ଼େ ନଅଟା ବେଳକୁ ସେ ସ୍କୁଲକୁ ଆସି ଯାଉଥିଲେ । ଖରା, ବର୍ଷା—ସବୁଦିନେ ସମାନ । ଘଣ୍ଟାର ପେଣ୍ଡୁଲମ୍ ଭଳି ସ୍କୁଲ ଗେଟ୍ ପାଖରେ ସେ ଟହଲ ମାରୁଥିଲେ । ଯେଉଁ ପିଲା ବିଳମ୍ବରେ ଆସେ, ତାକୁ ସେ କଟମଟ କରି ଚାହୁଁଥିଲେ । ବାପ୍, ବିଳମ୍ବରେ ଆସୁଥିବା ପିଲାଟି ମଧ୍ୟ ପଣ୍ଡିତଙ୍କ ଚାହାଁଣୀ ଦେଖି କାନ୍ଦ କାନ୍ଦ !

କେହି କେହି ମଣିଷର ହାତରେଖା ଦେଖି ଭବିଷ୍ୟତ କଥା କହି ଦିଅନ୍ତି, ମଧ୍ୟ ପଣ୍ଡିତେ କିନ୍ତୁ ପିଲାଙ୍କ ମୁହଁର ରେଖା ଦେଖି କହି ପାରୁଥିଲେ ତାର ମନ କଥା ।

ଥରେ ପଣ୍ଡିତେ ମତେ କ୍ଲାସରେ ଦେଖି କହିଲେ, କି ଶୁଭେନ୍ଦୁ ! ତୁ ଆଜ ଖାଇ ଆସିନୁ ?



ମୁଁ ମିଛ କହିଲି, ହଁ ସାର ! ଆଜ ଶଙ୍କୁଡ଼ି ଝୋଳ ହୋଇଥିଲା—

ପଣ୍ଡିତେ କିନ୍ତୁ ସହଜରେ ଭୁଲିବା ଲୋକ ନୁହନ୍ତି । କ୍ଲାସ ଶେଷରେ ମତେ ଧରିନେଲେ ତାଙ୍କ ବସାକୁ । ପତ୍ନୀଙ୍କୁ ଡାକ କହିଲେ, ଏଇ ଶୁଣୁଛ !

ଏ ଟୋକା କୁଆଡ଼େ ଶଙ୍କୁଡ଼ ଝୋଳ ଲଗେଇ ଭାତ ଖାଇ ଆସିଚି ! ଆଜଠୁଁ ମିଛ କହିଲାଣି; ବଡ଼ହେଲେ ନଷ୍ଟପୁ କବ ହେବ । ହଅ ତାକୁ କଅଣ ଜଳଖିଆ ଅଛି—

ଲାଜରେ ମୋର ସେତେବେଳେ କାନ୍ଥ ସହିତ ମିଶିଯିବା ଭଳି ଅବସ୍ଥା । ପରେ ମୋତେ ସ୍ୱୀକାର କରିବାକୁ ହୋଇଥିଲା ଯେ ସ୍କୁଲ ଆସିବା ଡେରି ହୋଇଯିବା ଭୟରେ ମତେ ଅଖିଆ ଆସିବାକୁ ହୋଇଛି, ଯଦିଓ ବୋଉ ଚୂଲିରେ ଶଙ୍କୁଡ଼ ତରକାରି ବସାଇଥିଲା !

ଜଳଖିଆ ଖାଉ ଖାଉ ସେଇସବୁ ସ୍ମୃତି ମନରେ ଭିଡ଼ ଜମାଉଥିଲା । ଗ୍ଲେଟ ଗ୍ଲେଟ ଭଙ୍ଗା ଭଙ୍ଗା ସ୍ମୃତି, କିନ୍ତୁ ବହୁକୋଣ ମୁକ୍ତଖଣ୍ଡ ଭଳି ମନରେ ଏଣେତେଣେ ଜକ୍ ଜକ୍ କରୁଥିଲା ।

(ପଣ୍ଡିତେ କହିଲେ, ମୋର ଯେତେ ଛାତ୍ର ଥିଲେ, ତୁମ୍ଭ ପାଇଁ ମୋର ସବୁଠାରୁ ବଳି ବେଶି ଗର୍ବ । ତୁମ୍ଭର କୌଣସି କାବ୍ୟ ପତ୍ରପତ୍ରିକାରେ ଦେଖିଲେ ମୁଁ ସବୁ ଛାତ୍ରଙ୍କୁ ଦେଖାଏ । କହେ, ଦେଖ ଗାନ୍ଧି ବିଷୟରେ ତମେ ଗୋଟାଏ ରଚନା ଲେଖି ପାରୁନାହିଁ, ହେଲେ ଏ ସ୍କୁଲରେ ଯେ ତମ ଭଳି ଛାତ୍ର ଥିଲା, ସେ କପରି ଜୀବନ, ଯୌବନ, ସମାଜ ସମ୍ପର୍କରେ କାବ୍ୟ ଲେଖୁଅଛି । ତୁମେ ଯେ ମୋର ଛାତ୍ର ଥିଲ, ସେ କଥା ସ୍କୁଲର କୌଣସି ଶିକ୍ଷକ ବିଶ୍ୱାସ କରନ୍ତି ନାହିଁ ।

ଗଳ୍ପ, ଉପନ୍ୟାସ, ନାଟକ, କବିତା—ଏସବୁ ପଣ୍ଡିତଙ୍କ ପାଇଁ କାବ୍ୟ ! କାବ୍ୟ ମାନେ ହିଁ ସାହିତ୍ୟ ।

ମୁଁ ଅପ୍ରସ୍ତୁତ ହୋଇ ପ୍ରତିବାଦ କଲି, ସାର୍ ! ଆପଣଙ୍କର ଆହୁରି ଅନେକ ଛାତ୍ର ମୋଠାରୁ ବଡ଼ ବଡ଼ କାର୍ଯ୍ୟରେ ବ୍ୟସ୍ତ ଅଛନ୍ତି । ରଘୁନାଥ ଇଂଜିନିୟର ହୋଇଛି । ବ୍ରାହ୍ମଣୀ ନଦୀ ଉପରେ ଯେଉଁ ବିରାଟ ବ୍ରିଜ୍ ହେଲା, ସେ ତ ତାର କୀର୍ତ୍ତି ! ଆଉ ପୁଣ୍ଡରିକ···ଯେ ଗଣିତରେ ଥିଲା ଗଧ···ଆଇ. ଏ. ଏସ୍. ପାଇ ହେ ଅର୍ଥ ବିଭାଗର ସେକ୍ରେଟେରୀ··· !

ପଣ୍ଡିତେ ହସିଲେ ।

କହିଲେ, ଶୁଭେନ୍ଦୁ ! ସେମାନେ ଜୀବନରେ ଉନ୍ନତି କରିଛନ୍ତି, କିନ୍ତୁ ବଡ଼ ହୋଇ ନାହାନ୍ତି । ରଘୁ ନ ଥିଲେ ବି ବ୍ରାହ୍ମଣୀର ବ୍ରିଜ୍ ହୁଅନ୍ତା,

ପୁଣ୍ଡରିକ ନ ରହିଲେ ବି ସରକାରଙ୍କ ଅର୍ଥ ବିଭାଗ ଚାଲିବ । କିନ୍ତୁ ତୁମେ ନ ଲେଖିଲେ ତୁମ୍ଭ ଗଦ୍ୟ-କାବ୍ୟ ଆଉ କିଏ ଲେଖି ପାରିବ ? ଉପେନ୍ଦ୍ରଭଞ୍ଜ, ମଧୁସୂଦନଙ୍କର କୌଣସି ବିକଳ୍ପ ଅଛି ?

ଆତ୍ମଶ୍ଲାଘାରେ ଉତ୍ସାହିତ ହୋଇ ସାର୍‌ଙ୍କ ପାଇଁ ମୁଁ ଆଉ ଦୁଇଟା ରସଗୋଲ୍ ଅର୍ଡ଼ର ଦେଲି ।

ପଣ୍ଡିତେ ଖାଇବା ଶେଷ କରି ଦୁଇ ଗ୍ଲାସ୍ ଜଳ ପାନକଲେ । ତାପରେ ମୋ ଆଡ଼କୁ ଅନେଇ କହିଲେ, ତୁମର ଗଦ୍ୟ କାବ୍ୟର ବିଷୟବସ୍ତୁ ଉଚ୍ଚକୋଟୀର । କିନ୍ତୁ ତୁମେ ସେଥିରେ ଯେଉଁ ଭାଷା ବ୍ୟବହାର କର, ତାହା ଇତର ଗ୍ରାମ୍ୟ ଲୋକଙ୍କ ଭାଷା । ପାଣ୍ଡମୁଖୀ ଭାଷା ନାମରେ ଏପରି କଥିତ ଭାଷା ବ୍ୟବହାର କଲେ ପାଠକମାନେ କି ଶିକ୍ଷା ଲାଭ କରିବେ ? ଉପେନ୍ଦ୍ରଭଞ୍ଜ, ମଧୁସୂଦନଙ୍କ ଭାଷା ଭଳି ତୁମ୍ଭ ଭାଷା ହୋଇପାରିବ ନାହିଁ କାହିଁକି ?

ଆଉ କୌଣସି ଯୁକ୍ତି ମାନନ୍ତୁ କି ନ ମାନନ୍ତୁ ପଣ୍ଡିତେ ଯେ ଗଳ୍ପ, ଉପନ୍ୟାସରେ କଥିତ ଭାଷା ପ୍ରୟୋଗର ଯୁକ୍ତି ମୋଠାରୁ ଶୁଣିବେ ନାହିଁ, ସେ କଥା ମୁଁ ଜାଣିଥିଲି ।

ପ୍ରସଙ୍ଗ ପରିବର୍ତ୍ତନ କରିବାକୁ ମୁଁ କହିଲି, ସାର୍ ! ଆଜିକାଲି କେହି ବହିର ଭାଷାରେ କଥା କହେ ! ପିଲା ଭାଷା ଶିଖେ ତାର ବାପା ମାଆଙ୍କଠାରୁ । ବହିର ଭାଷା ସେ କେବଳ ବ୍ୟବହାର କରେ ପରୀକ୍ଷା ଖାତାରେ···

ମଧୁ ପଣ୍ଡିତେ ମୋ କଥା ଶୁଣି ହଠାତ୍ ବିରକ୍ତ ହେଲେ । ଉତ୍ତର ଦେଲେ, ମୁଁ ଯେଉଁ ଭାଷା କହୁଛି, ତାହା କଅଣ ମୋ ନନାଙ୍କ ଭାଷା ! ଏ ଭାଷା ମୁଁ ଉପେନ୍ଦ୍ରଭଞ୍ଜ, ମଧୁସୂଦନଙ୍କଠାରୁ ଶିଖିନାହିଁ ! ରୁଷ୍ଟ ହୋଇ ତୁମେ ମତେ ଶିକ୍ଷା ଦେଉଅଛ ?

ରୁଷ୍ଟ ଜୀବନଟିରେ ପଣ୍ଡିତେ ରାଗ କଲେ ମୁଁ ଚୁପ୍ ହୋଇ ଯାଉଥିଲି । ସେଦିନ ମଧ୍ୟ ମନେ ଅଗତ୍ୟା ନୀରବ ରହିବାକୁ ହେଲା ।)

ତାପରେ ଅନେକ ଦିନ ମଧୁ ପଣ୍ଡିତଙ୍କ ସହ ମୋର ଦେଖା ହୋଇନି । କଟକ ସହର ଗ୍ରେଟ ହେଲେ ସୁଦ୍ଧା ପଣ୍ଡିତଙ୍କ ସ୍କୁଲଟି ମୋ ଯିବା ଆସିବା ରାସ୍ତା ମଧ୍ୟରେ ପଡ଼ୁ ନ ଥିବା ଦୃଷ୍ଟିରୁ ଦେଖା ହେବାର ସମ୍ଭାବନା ମଧ୍ୟ ଊଣା ହୋଇଯାଇଛି । ପଣ୍ଡିତଙ୍କ ଘଯାର ହେଲ ସେ ଶିକ୍ଷାଦାନ କରୁଥିବା ବିଦ୍ୟାଳୟ । ସହରକୁ ଆସିବା ପରେ ସମ୍ଭବତଃ ଆଗ ଭଳି ନିଜ ସ୍କୁଲକୁ ଆପଣାର କରି ନେଇଛନ୍ତି ।

ସହରର ଏହା ହେଉଛି ସ୍ୱଭାବ । ପାଖ ଲୋକ ମଧ୍ୟ ଏଠାରେ ପର । ଇଚ୍ଛା ନ କଲେ, ଚେଷ୍ଟା ନ କଲେ ଏଠାରେ କାହାରି ସହିତ କାହାର ସହଜରେ ଦେଖା ହୁଏନାହିଁ ।

ମଧୁ ପଣ୍ଡିତଙ୍କ କଥା ମୁଁ ପ୍ରାୟ ଭୁଲି ଯିବାକୁ ବସିଛି, ଏମିତି ଦିନେ ଏକ ସକାଳେ ମୋ ଘର ବାରଣ୍ଡାରେ ପଣ୍ଡିତଜୀଙ୍କ ପାଟି ଶୁଣାଗଲା ।

ଶୁଭେନ୍ଦୁ ! ତୁମେ ଘରେ ଅଛ ?

ମୁଁ ବାହାରକୁ ଆସି ଦେଖିଲି ପଣ୍ଡିତଜୀଙ୍କ ମୁହଁରେ ଏକ ରୂପା ଉତ୍ତେଜନାର ପ୍ରତିକ୍ରିୟା ପ୍ରକଟିତ ହେଉଛି । କିଛି ଏକ ଅଘଟଣ ଘଟି ଯାଇଛି, ଏମିତି ଏକ ଭାବ ଫୁଟି ଉଠୁଛି ତାଙ୍କ ମୁହଁରେ ।

ମତେ ଦେଖି ପଣ୍ଡିତଜୀ କହିଲେ, ଆଚ୍ଛା ! ବାଦଲ ବୋଲି ମୋର ଜଣେ ଛାତ୍ର ଏଠାରେ ତୁମ ଘର ପାଖରେ କେଉଁଠି ରହେ ଜାଣିଛ ?

ଆମ ସାହି ଦୁର୍ଗା କ୍ଳବ୍‌ର ସହକାରୀ ସମ୍ପାଦକ ବାଦଲ ! ଦୁର୍ଗା ପୂଜା, ଗଣେଶ ପୂଜା, ସରସ୍ୱତୀ ପୂଜାରେ ପ୍ରତି ବର୍ଷ ତିନି ଥର ନିୟମିତ ଚାନ୍ଦା ନେବା ପାଇଁ ସେ ଆସେ । ସେଇ ସୂତ୍ରରେ ମୋ ସହିତ ତାର ପରିଚୟ ।

ମୁଁ ତରତର ହୋଇ ଉତ୍ତର ଦେଲି, ଜାଣିଛି । ଏଇ ସାହିରେ ତାର ଘର । କଅଣ ହେଲା ? ତାକୁ ଡାକି ପଠାଇବି ?

ପଣ୍ଡିତଜୀ ଗୋଟାଏ ଦୀର୍ଘ ନିଃଶ୍ୱାସ ଟାଣି କହିଲେ, ହଁ—ଡାକିବା ଦରକାର । କିନ୍ତୁ ତାକୁ ନୁହେଁ—ତା ବାପାକୁ କିମ୍ବା ତାର ଅନ୍ୟ କୌଣସି ଅଭିଭାବକଙ୍କୁ ।

ମୁଁ ସାମାନ୍ୟ ଇତସ୍ତତଃ ହୋଇ କହିଲି, ସାର୍ ! ବାଦଲ ତ ବେଶ୍ ଭଲ ପିଲା । ସ୍କୁଲରେ ଭଲ ପଢ଼େ ବୋଲି ଶୁଣିଛି । ସେ ସ୍କୁଲରେ କଅଣ କାହାକୁ ମାରଧର କରିଛି ?

ପଣ୍ଡିତଜୀ ଉତ୍ତର ଦେଲେ, ଭଲ ପିଲା ସତ । ସଂସ୍କୃତ ଧାତୁ ରୂପ, ଶବ୍ଦ ରୂପ ତାର ଜିହ୍ୱାଗ୍ରରେ ସର୍ବଦା କ୍ରୀଡ଼ା କରୁଥାଏ । ଏକାଦଶ ଶ୍ରେଣୀରେ ସେ ଏକମାତ୍ର ଛାତ୍ର; ଯାହା ଉପରେ ମୋର ଅନେକ ଭରସା ଥିଲା । କିନ୍ତୁ କାଲି ତାକୁ ଲତା ଶବ୍ଦର ରୂପ ପଚାରିଲି—ସବୁ ଭୁଲ କହିଲା । ରାଗ କରି ମୁଁ କହିଲି, କାଲି ଯଦି ଲତା ଶବ୍ଦ ଠିକ୍ ଭାବରେ ମୁଖସ୍ଥ କରି ନ ଥିବୁ, ସ୍କୁଲକୁ ଆସିବୁ ନାହିଁ । ବାସ୍......

ତାପରେ କଅଣ ହେଲା ?

ତାପରେ ଆଖି ରଙ୍ଗେଇ ମତେ ଜବାବ୍ ଦେଲା, ତୁ ଶଳା ପଣ୍ଡିତ ମତେ ସ୍କୁଲକୁ ଆସିବା ପାଇଁ ମନା କରିବାକୁ କିଏ ? ମୋ ବାପା ଦରମା ଦେଉଛି—ମୁଁ ଅଲବତ୍ ଆସିବି—

କଥା ଶେଷ କରିବା ଆଗରୁ ପଣ୍ଡିତଜୀଙ୍କ କଣ୍ଠସ୍ୱର ପ୍ରକମ୍ପିତ ହେଲା । ଠିକ୍ କାନ୍ଦ କାନ୍ଦ ଭାବ । ଆଘାତ ଯେ ତାଙ୍କର ମର୍ମସ୍ଥଳ ଭେଦ କରିଯାଇଛି, ମୁଁ ବେଶ୍ ବୁଝି ପାରୁଥିଲି ।

କିଛି ସମୟର ନୀରବତା ପରେ ପଣ୍ଡିତଜୀ କହିଲେ, ଶୁଭେନ୍ଦୁ ! ତୁମ୍ଭେ ବିନେ ମୋର ଛାତ୍ର ଥିଲ । ତୁମ୍ଭେ ଲେଖକ ହୋଇଅଛ । ବୃହଦାକାର ଗଦ୍ୟ କାବ୍ୟମାନ ରଚନା କରୁଅଛ । ରଘୁନାଥ ପ୍ରସିଦ୍ଧ ଇଞ୍ଜିନିୟର ହୋଇଅଛି । ବିରାଟକାୟ ପୋଲମାନ ନିର୍ମାଣ କରୁଅଛି । ପୁଣ୍ଡରିକ ସରକାରଙ୍କ ଅର୍ଥ ବିଭାଗ ସଚିବ ଭାବରେ ପ୍ରତିଷ୍ଠିତ । ପାଠରେ ତ୍ରୁଟି କଲେ ମୁଁ ତୁମ୍ଭମାନଙ୍କୁ କି ଦଣ୍ଡ ଦେଇନାହିଁ ! ତୁମ୍ଭମାନଙ୍କୁ ବେଞ୍ଚ ଉପରେ ଠିଆ କରାଇଅଛି । ବେତ୍ରାଘାତ କରିଅଛି । ତୁମ୍ଭେମାନେ କେବେହେଲେ ମୋ ମୁହଁ ଉପରେ ପ୍ରତିବାଦ କରିଅଛ ? ଅଥଚ ସହରର ଏ ଛାତ୍ର ଜଣକ ମତେ ଶଳା କହିଲା ? ଧମକ ଦେଲା ଯେ, ମୁଁ ବେଶି ବକ୍ ବକ୍ କଲେ ମତେ ଏ ସ୍କୁଲରୁ ବଦଳି କରାଇ ଦେବ ? ଛାତ୍ର ଜୀବନରେ ଯେ ଏପରି, ସାଂସାରିକ ଜୀବନରେ ପ୍ରବେଶ କଲେ ସେ କିଭଳି ମଣିଷ ହେବ ?

(ମଧୁ ପଣ୍ଡିତଙ୍କ ମର୍ମବେଦନା ମୁଁ ବେଶ୍ ବୁଝି ପାରୁଥିଲି । ଇଚ୍ଛା ହେଉଥିଲା ସାର୍‌ଙ୍କୁ କହନ୍ତି, ଶଳା ଶବ୍ଦର ଆଭିଧାନିକ ଅର୍ଥ ଜାଣି ବାଦଲ ତାଙ୍କ ପ୍ରତି ସେ ଶବ୍ଦ ବ୍ୟବହାର କରିନାହାଁନ୍ତି । ଶବ୍ଦଟି କେବଳ ଏକ ନିଷ୍ଫଳ କ୍ରୋଧର ଅର୍ଥହୀନ ବହିଃପ୍ରକାଶ ମାତ୍ର ।

ଏଇ, ସେଦିନ ତ ରେଲ୍‌ୱେ ବୁକ୍ ଷ୍ଟଲ୍‌ରେ ମୁଁ ଠିଆ ହୋଇଛି, ଜଣେ ନେତା ଆସିଲେ ମୋ ଉପନ୍ୟାସ କିଣିବାକୁ । ବହିର ଦାମ୍ ଦେଖି ରାଗରେ ସ୍ୱଗତୋକ୍ତି କଲେ, ଶଳା ଶୁଭେନ୍ଦୁ ମିଶ୍ର ଆଜିକାଲି ମାରୱାଡ଼ିଙ୍କ ପାଇଁ ଉପନ୍ୟାସ ଲେଖୁଛି ବୋଲି ବହିର ଦାମ୍ ଏତେ ବେଶି କରୁଛି ଯେ, ଦୁଇ ମାସ ସିନେମା ଦେଖା ବନ୍ଦ କଲେ ବି ଖଣ୍ଡେ ବହି କିଣିହେବ ନାହିଁ ।

ରେଲ୍‌ୱେ ବୁକ୍ ଷ୍ଟଲ୍‌ର ପରିଚାଳକ ସର୍ଦ୍ଦାରଜୀ ନେତା ଜଣକର ଆକ୍ଷେପ ଶୁଣି ବଡ଼ କରୁଣ ଦୃଷ୍ଟିରେ ମୋ ମୁହଁକୁ ଚାହିଁଲେ । ତାଙ୍କ ଦୋକାନରେ ଜଣେ ସାଧାରଣ ଲୋକ ମୋତେ ଶଳା ବୋଲି କହିଲା, ଏଥିପାଇଁ ମୋ ପାଖରୁ ସେ ମାଫି ମାଗିବାକୁ ମଧ୍ୟ ଆଗେଇ ଆସିଲେ ।

ସର୍ଦ୍ଦାରଜୀଙ୍କୁ ମୁଁ ସାନ୍ତ୍ୱନା ଦେଇଥିଲି । କହିଥିଲି, ଲେଖାର ପ୍ରଶଂସା ଯେପରି ଲେଖକର ପ୍ରାପ୍ୟ, ବହିର ଅତିରିକ୍ତ ମୂଲ୍ୟ ପାଇଁ ନିନ୍ଦା ମଧ୍ୟ ତାର ସେହିପରି ପ୍ରାପ୍ୟ । ଏ ଶଳା ଶବ୍ଦରେ କୌଣସି ବିଷ ନାହିଁ; ଧାର ନାହିଁ । ତା ଛଡ଼ା ଆପଣ ସିନା ମତେ ଚିହ୍ନିଛନ୍ତି, ମୁଁ ଏଠି ଠିଆ ହୋଇଛି ବୋଲି ନେତା ଜଣକ ଜାଣିବ କାହିଁକି ?

ଇଚ୍ଛା ହେଉଥିଲା ମଧୁ ପଣ୍ଡିତଙ୍କୁ ଏଇ ଉଦାହରଣ ଦେଇ ବୁଝାଇ ଦେବି । ଆଜିକାଲି ଏପରି ଶବ୍ଦ ବ୍ୟବହାର ପାଇଁ ଭାବପ୍ରବଣ ହେବା ଉଚିତ ନୁହେଁ ବୋଲି ଅନୁରୋଧ କରିବି । କିନ୍ତୁ ପର ମୁହୂର୍ତ୍ତରେ ସେ ଇଚ୍ଛା ମୋ ମନରୁ ଅନ୍ତର୍ହିତ ହୋଇଗଲା । କାରଣ ମୁଁ ବୁଝି ପାରୁଥିଲି, ବାଦଲର ଶଳା ଶବ୍ଦ ପ୍ରୟୋଗରେ ସେ ବ୍ୟଥିତ; କାରଣ ତାଙ୍କର ବଦ୍ଧମୂଳ ଧାରଣା, ଛାତ୍ର-ମାନେ ମଣିଷ ହେବା ପାଇଁ ଶିକ୍ଷାଲାଭ କରିବାକୁ ବିଦ୍ୟାଳୟକୁ ଆସନ୍ତି । ଏ ଧାରଣା ବଦଳାଇବାକୁ ତାଙ୍କୁ କିଛି ସମୟ ଲାଗିବ । ହେଲେ ମୋ ଭଳି ସେ ମଧ୍ୟ ବୁଝି ପାରିବେ, ଟିକେଟ କାଟି କିଛି ସମୟ ମଉଜ କରିବାକୁ ଲୋକେ ଯେମିତି ସିନେମା ହଲ୍‌ରେ ପଶନ୍ତି; କିଛି କିଛି ଛାତ୍ର ହୋ ହାଲ୍ଲା କରି

ସମସ୍ତେଁ କାଟିବାକୁ ଦରମା ଦେଇ ସ୍କୁଲରେ ନାମ ଲେଖାନ୍ତି । ସବୁଠୁଁ ରହିଥିବା ରଘୁନାଥ କମ୍ପା ପୁଣ୍ଡରୀକ ଭଳି ଇଞ୍ଜିନିୟର ଅଥବା ଆଇ. ଏ. ଏସ୍. ହୁଅନ୍ତି ନାହିଁ । କେହି କେହି ମାଲଗୋଦାମର ଦଲାଲ ନ ହେଲେ ବ୍ଲାକ୍ ମାର୍କେଟିଅର ହୁଅନ୍ତି ।

କିନ୍ତୁ ମଧୁ ପଣ୍ଡିତେ ଏ ସବୁ ଜଟିଳ ରହସ୍ୟ ବୁଝିବା ଲୋକ ନୁହନ୍ତି । ଯାହା ହେଲେ ମଧ ତାଙ୍କ ଭଳି ବୟସ୍କ ବ୍ୟକ୍ତିଙ୍କୁ ବାଦଲ ଶଳା ବୋଲି ସମ୍ବୋଧନ କରିବା ଯେ ଉଚିତ ହୋଇନାହିଁ; ଏ କଥା ତାର ବାପା ଜାଣିବା ଉଚିତ, ସେ ବିଷୟରେ ମୋର ସନ୍ଦେହ ନ ଥିଲା ।)

ପଣ୍ଡିତଜୀଙ୍କୁ ସାଙ୍ଗରେ ଧରି ମୁଁ ବାଦଲ ଘରକୁ ଗଲି । ଘରେ ବାଦଲ ନ ଥିଲା । ତାର ବାପା ଥିଲେ । ତାର ବାପାଙ୍କୁ ମୁଁ ସବୁ କଥା ବୁଝାଇ କହିଲି । ମଧୁ ପଣ୍ଡିତେ କିପରି ଶୁଦ୍ଧବାଦୀ, କ୍ଷମା ଲୋକ, ସେ କଥା ମଧ ବୁଝାଇ ଦେଲି ।

ମୋ କଥା ଶୁଣି ବାଦଲର ବାପାଙ୍କ ମୁଖମଣ୍ଡଳ ହଠାତ୍ ପିଙ୍ଗଳ ବର୍ଣ୍ଣ ଧାରଣ କଲା । ନାସାରନ୍ଧ୍ରରୁ ନିର୍ଗତ ହେଲା ଖରଶ୍ୱାସ । ସେ ଚିତ୍କାର କଲେ, ସେ ଶଳା ଗଲା କୁଆଡ଼େ ? ଘରେ ବାପାକୁ ଶଳା, ମାଆକୁ ଶାଳୀ କହୁଛି ବୋଲି ଶଳା ଇସ୍କୁଲରେ ମାଷ୍ଟରଙ୍କୁ ବି ଦୋଅକ୍ଷରି କହୁଛି ? ଆଜି ଆସୁ ତାକୁ ବିଗିଡ଼ କରି ହାଣିଦେବି—

ବାଦଲର ବାପାଙ୍କ କଥା ଶୁଣି ମଧୁ ପଣ୍ଡିତଙ୍କ ମୁହଁରୁ ରକ୍ତ ଶୁଖିଗଲା । ସେ ମୋର ହାତ ଧରି ଟାଣିଲେ, କହିଲେ, ଶୁଭେନ୍ଦୁ ! ଚାଲିଆସ—ଆଉ କିଛି ଶୁଣିବା ଦରକାର ନାହିଁ । ବାପା ପୁଅକୁ ଶଳା ସମ୍ବୋଧନ କରୁଅଛି, ପୁଅ ଯେ ଶିକ୍ଷକକୁ ସେହିଭଳି ସମ୍ବୋଧନ କରିବ, ଏଥିରେ ବିସ୍ମୟର କଅଣ ଅଛି ?

ବାହାର ଭାଷା କେହି ମୁହଁରେ ବ୍ୟବହାର କରେନାହିଁ; ବାପ ମାଆଙ୍କଠାରୁ ପିଲା ଯେ ଭାଷା ଶିଖେ, ସେ କଥା ମଧୁ ପଣ୍ଡିତଙ୍କୁ ମତେ ଆଉ ଯୁକ୍ତି କରି ବୁଝାଇବାକୁ ହେଲା ନାହିଁ । ବାଦଲର ବାପାଙ୍କ ଦୁଇ ପଦ କଥା ପଣ୍ଡିତଜୀଙ୍କ ଆଖି ଆଗରେ ସେ ରହସ୍ୟର ଦ୍ୱାର ଉନ୍ମୁକ୍ତ କରିଦେଲା ।

# ମାଷ୍ଟ୍ରେ

## ଅଧ୍ୟାପିକା ରେଣୁକା ଦେବୀ

ହରିହର ପଣ୍ଡିତେ ହୁଡ଼ା ଉପରକୁ ଉଠିଲେ । ଲାଜକୁଳୀ ଲତାର ଟିକି ଟିକି ବାଇଗଣି ଫୁଲ ଉପରେ ସବୁଜ କାକର ଜକ ଜକ କରୁଛି । ପ୍ରତ୍ୟକ୍ଷ ଦେବତା ମା କୋଳ ଗୁଡ଼ ଉପରକୁ ଉଠିଲେଣି । ସବୁ ପାହାନ୍ତ ଅବିର ରଙ୍ଗ ଉପରେ ସୁନା ପୁଟ ବୋଳି ହୋଇ ଆସୁଛି । ହ'କର ବଳରେ ଧାନ କେନ୍ଦା ଗଦା ମସ୍ତ ହୋଇଛି । ଆହୁରି କେତେ କଷ୍ଟ ହୋଇନ । କୋଉଠି ଧାନ କେଣ୍ଡାଏ ହୁଡ଼ା ଉପରେ ପଡ଼ିଛି । ହରିହର ନଇଁପଡ଼ି ବାଟରୁ ଉଠାଇ ନେଉଛନ୍ତି । ମା ଲକ୍ଷ୍ମୀ ସେ, ତାଙ୍କର ପାଇଁ ଏତେ କଥା ।

'ଦଣ୍ଡବତ, ଆଜ୍ଞା ।'

'କିଏ ! ଆରେ-ମଣିଆ ! ନକୁଳା କେମିତି ଅଛି ?'

'ଭଲ ଅଛି ଆଜ୍ଞା, ଆପଣଙ୍କ ହାତ ଯଶ, ହ' ପାନରୁ ତିନ ପାନ ଔଷଧ ପେଟକୁ ଯାଇନ, ଆଠ ଦିନର ଜରରୁ ଉଠି ବସିଲା । ଆଜି ପଥି ହ'ଟା ଦେବ ବୋଲି ପୁରୁଣା ଗୁଡ଼ଳ ପୋଷେ ଆଣିବାକୁ ଆଉ ଗାଁ ରଥ ଘରକୁ ଯାଉଛି ।'

ହରିହର ଟିକିଏ ଚଞ୍ଚଳ ହୋଇପଡ଼ିଲେ । କହିଲେ, 'ରଥ ଘରକୁ ମାଇଲିଏ ବାଟ ଯିବା ଦରକାର ନାହିଁ, ଆମ ଘରକୁ ଯା, ମା ପାଖରୁ ନେଇ ଆସିବୁ । କଳା ବାଇଗଣ ପୁଞ୍ଜାଏ, ତୁଇଁ ହ'ଟା ବାଡ଼ିରେ ଅଛି ।'

'କରେ, ଏତେ ଲାଜ କ'ଣ ? ମୋ ଘରେ ପଣି ମା କାନ୍ଦରୁ ତୋର ପିଠୁଳି ପିଠେଇ ଖାଉଥିଲୁ । ଏଡ଼େ ବଡ଼ ମଣିଷଟାଏ କୋଉଦିନ ହେଲୁ ? ତୁ ଖାଲି କହିବୁ ଯା ପୁରୁଣା ଗୁଡ଼ଳ କଥା ।'

ମଣିଆ ବୁଝିଲ, ଆଉ ଖସିବାର ବାଟ ନାହିଁ । ଇଚ୍ଛା ହେଲ ସେଇଠି ଚୋଡ଼ ତଳେ ଗଡ଼ ଯାଆନ୍ତା । ପିଲାଦିନରୁ ମା' ଛେଉଣ୍ଡ ମଣିଆ ହର ପଣ୍ଡିତଙ୍କ ସ୍ତ୍ରୀଙ୍କୁ ମା' ଡାକୁଛି । ରାତିରେ ବାପ ପାଖରେ ଘରେ ଶୋଇବା ଛଡ଼ା ସେଇଠି ତା'ର ଅଳଝଳ ସବୁ । ସେଇ ମଣିଆର ଆଠ ବର୍ଷର ପୁଅ ବି ହରିହରଙ୍କ ପାଖେ ପାଠ ପଢ଼ୁଛି । ମଣିଆ ହରିହରଙ୍କ ଘରବାଟ ଧରିଲ ।

ବୋହୂଟିଏ କଏ କପାଳ ଉପରକୁ ଲୁଗା ଟାଣି ହୁଡ଼ା ଉପରେ ଆସୁଛି । କାଖରେ ଛୁଆଟିଏ । ହରିହର ଟିକଏ ପାଖେଇ ଠିଆ ହେଲେ ।

କଏ ମା !

ଗୋଡ଼ ତଳେ ମୁଣ୍ଡ ଲଗେଇ ବୋହୂଟି ଉଠି ଛିଡ଼ା ହେଲ ।

ସାବ ! ସେଇ ସିଙ୍ଘାଣିନାକୀ ଆଲୁରିମୁଣ୍ଡି ସାବ ! ଏଇ ଗାଁର ଝିଅ ସେ, ଏଇ ଗାଁରେ ବାହା ହୋଇଥିଲ, ଦି' ବରଷ ହେଲଣି । କୋଳରେ ପୁଅଟିଏ ।

ହରି ପଣ୍ଡିତଙ୍କ ମୁହଁରୁ କେବି କେବି ହସ ଝରି ପଡ଼ିଲ ।

ଗାମୁଛାରେ ତା'ର ସିଙ୍ଘାଣି ପୋଛୁ ଶୀତ ସକାଳରେ ଫାଟିଲ ହାତ ଗୋଡ଼ରେ କଡ଼ୁଆ ତେଲ ମାରି ହରି ପଣ୍ଡିତ ତାକୁ କୋଳରେ ବସାଇ କୋଳି ଦେଉଥିଲେ । ଇସ୍କୁଲ ଆସିବାକୁ ମଙ୍ଗେନି । ନିଜ ବାଡ଼ିର କୋଳି, କାକୁଡ଼ି ଦି'ଟା ନେଇ ପଣ୍ଡିତେ ତାକୁ କାଖେଇ କୋଳେଇ ଆଣନ୍ତି । କେତେ ବର୍ଷ ହେଲ ! ବାର ବର୍ଷ । କେତେ ଚଞ୍ଚଳ ଦିନଗୁଡ଼ାକ ଗଡ଼ି ଯାଉଛି ସତେ !

ଭଲ ଅଛୁ ମା ? ସନାତନ କେମିତି ଅଛି ?

ଲାଜରି ମୁହଁରେ ସାବି ସ୍ୱାମୀର ଭଲ ମନ୍ଦ କହିଲ ।

ନଧିବୁଢ଼ା ମଳିକ ଘର ବାଡ଼ କରୁଛି ଧୂଳିବି, କନିଅର ଫୁଲ ତୋଳୁଛି । ଶୀତରେ ଥରୁଛି । ମୁଣ୍ଡରେ ବାଳଯାକ ଖୋଟ ପରି ପାଚି ଗଲଣି ।

'ଭଲ ଅଛ ଭାଇ ?'

'ପଣ୍ଡିତେ ଆଜ୍ଞା ? ହଁ—ଏଥର ଯିବାବେଳ ହେଲା, ଆଉ ଭଲ ମନ୍ଦ କ'ଣ । ଆପଣ କ'ଣ ଏ ଗାଁ ଛାଡ଼ ଯିବା ହେବେ ? ଏଠି କିଏ ପାଠ ପଢ଼େଇବ ? ଏ ବନ୍ଧୁଆଡିଗୁଡ଼ାଙ୍କୁ ଆଉ କେହି ମଣିଷ କରି ପାରିବେନି ଆଜ୍ଞା । ଭୋକିଲା ପେଟକୁ କଥାଁକ କଥାରେ ପୂରେଇ, ପିଠି ଆଉଁସି, ବାପଧନ ପଦ କିଏ ଶୁଣେଇବ ଯେ କାଦୁଅ ଢିଙ୍କା ପିଜୁଳି ବାଡ଼ ଛାଡ଼ ଗଡ଼ି ନ ପାରୁଣୁ ଏ ଗୋଠକ କଳିକାଳିଆ ହୋଇ ଇସ୍କୁଲ ଧାଇଁବେ ?

ଆଉ ପାଗଳା ନନ୍ଦିବୁଢ଼ା ମନକୁ ମନ କହି କହି ଆଗକୁ ଯାଉଛି—

'କେଇଟା ପାଠୁଆ ଯେତେବେଳେ ଏ ଗାଁରେ ଥିଲେ ? ଏଇ ହରି ପଣ୍ଡିତ ଆସି ଇସ୍କୁଲ ଖୋଲିଥିଲା । ବାର ଦୁଆର ବୁଲି ପିଲାଙ୍କୁ ଡାକୁଥିଲା ସତେ ଯେମିତି ନିଜ ପିଲା । ଠାକୁରାଣୀ ପଶିଲା ଯେ ଯିଏ ଯାହା ଘରେ ଚାଟି କବାଟ ଦେଇ ପଶିଲେ, ମଶାଣି ପଡ଼ିଆରେ ମଡ଼ାଥାନ ହେଲେନି, ଏଇ ହରି ପଣ୍ଡିତ ପାଇଁ ଗାଁ ରହିଲା । ପର ପାଇଁ କିଏ ସେ ଜୀବନମୂର୍ଚ୍ଛା ପଣ କରିବ ?'

ଚାଟି ଫିଟାଇ ହରିହର ଭିତରକୁ ପଶିଲେ ।

ଚାଟିରୁ ବତା ଖଣ୍ଡେ ଭାଙ୍ଗି ଗଲାଣି । ଛେଳି ପଶିଯିବେ ଭିତରକୁ । କତା ଖଣ୍ଡେ ସେ ଛକ ଦେଇ ବାନ୍ଧି ଦେଲେ ।

ଗେଣ୍ଡୁ ଫୁଲର ମଉଛବ । କଖାରୁ ପାଚିଲା ବଲିଭି ବାଇଗଣରେ ଇସ୍କୁଲ ବଗିଚା ହସୁଛି । ଗହଳିଆ ଶାଗ, ଧନିଆଁ ପତ୍ର କଆଁରିରେ ଶାଗୁଆ ରଙ୍ଗ ଲହଡ଼ା ମାରୁଛି । ମଟର ଲଟିରେ ଛୁଇଁ ପୂରିଛି । ଏ ସବୁ ହରିହରଙ୍କ ହାତ ତିଆରି । ରାତି ନ ଶୋଇ ସେ ଜଗିଛନ୍ତି, କଖା, କଚିରୁ କିଏ କାଳେ ଉଜାଡ଼ ଦେବ, ଗୋରୁଗାଈ ଖାଇଯିବେ । ଭଲରେ ପନିପରିବା ଢ'ଟା ଉଠୁରିଲେ ଛୁଆଗୁଡ଼ା କେଡ଼େ ଖୁସିରେ ଖାଇବେ ।

ହରିହରଙ୍କ ଆଖିରେ ସତେ କି ଦିଶିଗଲା ସନା, ଭିକାରି, ମୋତି, ଦଲାଙ୍କ ଦଳ ଛଡ଼ାଛଡ଼ି ହୋଇ ଖାଉଛନ୍ତି ମଟର ଛୁଇଁ । ପାଚିଲା ବଲିଭି

ବାଇଗଣ ରସ କଡୁଣୀ ଯାଏ ବୋହି ଆସୁଛି । ଧୂଳି ଧୂସରିଆ ମଇଳା ମୁହଁରେ କାଗଜୀ ଲେମ୍ବୁ ରସ ବୋଳି ହୋଇଛି । ଝଣାଝଣି, ହସଖୁସି, ବାଳ ମଉଛବ । ଶିଶୁ ଦେବତା ଆଖିରେ ଖାଲି ଖୁସି ଉଳୁସି ଉଠୁଛି ।

'ସାର୍, ସମସ୍ତେ ଅପେକ୍ଷା କରିଛନ୍ତି ।'

'ସାର୍ !' ମାଷ୍ଟ୍ରେ ଡାକ ଯାଇଛି । ଅବଧାନ ପଦ ଲୁଚି ଗଲାଣି ।

'କିଏ ଡାକୁଛି ?'

ହରି ପଣ୍ଡିତ ଦଣ୍ଡେ ଛିଡ଼ା ହୋଇଗଲେ । ମନେ ପଡ଼ିଲା, ତାଙ୍କର ଯିବାବେଳ ହୋଇଯାଇଛି । ନୂଆ ମାଷ୍ଟ୍ରେ ଆସିଛନ୍ତି, ତାଙ୍କୁ ସେ କାଗଜପତ୍ର ଘର ବୁଝେଇ ଦେଇଛନ୍ତି । କାଗଜପତ୍ରରେ କି ଘର ବା ଥାଏ ।

ପିଲାଆଡ଼କୁ ସେ ଅନାଇଲେ । ଦଳ ବାନ୍ଧି ଠିଆ ହୋଇଛନ୍ତି ପୁଅଝିଅ । ଏ ଘର ମୁଣ୍ଡେଇବା ସହଜ ନୁହେଁ ।

କିରେ ନରୁ, କାନ୍ଦୁଛୁ କାହିଁକି ? ଆଜି ପାଠ କରି ଆସିନୁ ?

ପିଲାଆଡ଼ୁ ଉଠିଲା ରୋଳ । ଲୁହ, ନାଳ ଏକାଠି । କହି ଉଠୁଛି···ମାଷ୍ଟ୍ରେ ଚାଲିଯିବେ । ଏଥର ଛୁଟି ନେବେ । ନୂଆ ମାଷ୍ଟ୍ରେ ଆସିଛନ୍ତି, ପଢ଼େଇବେ ।

ସେ କ'ଣ ଏମିତି ଘରକୁ ଡାକି କୋଳ ଦେବେ ? କ'ଣ ବଗିଚା ବୁଲେଇ ଫୁଲ ଫଳ ଦେଖେଇବେ ? ଖାଇ ନ ଥିଲେ ପିଠି ଆଉଁସି ସାଙ୍ଗରେ ଧରି ଘରକୁ ଯିବେ ? କେତେବେଳେ ସେ ପାଠ ପଢ଼ାନ୍ତି ? ପଢ଼ିଲା ପରି ଲାଗେନି ତ, ଖାଲି ଖେଳ ବୁଲା, କାହାଣୀ ଶୁଣା······ତା'ରି ଭିତରେ କେତେ କଥା ମନେ ରହିଯାଏ । ମନରୁ ଯାଏନି ।

ସଭା ହେବ—ବିଦାୟ ସଭା । ହରି ପଣ୍ଡିତ କାମରୁ ଛୁଟି ନେବେ । ନୂଆ ଲୋକ ବେଶି ପାଠ ପଢ଼ିଛନ୍ତି । ସେ କାମ କରିବେ । ପିଲା, ବୁଢ଼ା, ମାଇପେ—ଗାଁଟାର ଅଧାଅଧି ଲୋକ ଇସ୍କୁଲ ଦୁଆରେ ଜମା ହୋଇଛନ୍ତି ।

ସେ ଯିବେ । ପୁଅ ଡାକୁଛି ପାଖରେ ରହିବାକୁ । ସହର ମାଟିରେ ସେ ପୁଣି ଘର ବାନ୍ଧିବେ । କେତେ ବର୍ଷ ! ତିରିଶ ବର୍ଷ ତଳେ ସେ ଏଇ

ଗାଁକୁ ଆସିଥିଲେ । ଯୁଆନ ବୟସ, ମନରେ ଥିଲ କେତେ କୁଆଡ଼ର ସଞ୍ଚିଲ ଛପିଲ ଆଶା, ନିଆଶା । ଲୋକେ ସନ୍ଦେହରେ ଅନେଇ ଥିଲେ । ପାଠ ? ପେଟକୁ ଦାନା ନାହିଁ, ପିଠିକି କନା ନାହିଁ । ଏଇ ଗାଁର ଅଧା ଲଙ୍ଗଳା ମଡ଼ିଆ ଟୁଆ ପାଠ ପଢ଼ିବେ ! ଭୋକଲ ପେଟରେ କି ପାଠ ? ଏଇ ଟୋକା ଖଣ୍ଡିକ ପାଠ ପଢ଼େଇବ ?

ହରିହର ଗାଁ ମୁଣ୍ଡ ପଧାନ ପିଣ୍ଡାରେ ବସି ପଡ଼ଲେ । କନା କୋଚଟ ଟୁଆ କେତୋଟି ଦାଣ୍ଡରେ ଖେଳୁଛନ୍ତି ।

'ମଉସା, ଆପଣମାନଙ୍କ ଭରସାରେ ଏଠିକି ଆସିଲି । ଟୁଆଙ୍କ ସାଙ୍ଗରେ ଦି'ପଦ କଥା କହି ଦିନ କଟିଯିବ ।'

ମଧୁ ପଧାନ ଦଣ୍ଡେ ରୁହିଁଲ । ପୁଅ ଝିଅ ତା'ର ନାହାନ୍ତି । ମଉସା ଡାକରେ ମନ ତଟିଲ । ପୁଅ ଡାକରେ ସଙ୍ଖୋଳ ବସିଲ । ମଧୁ ପଧାନ ମା' ଘର ଭିତରୁ ଆସି ନାଡ ଟୋକାକୁ ଟାପରା କଲ । ଛତିଶ ବର୍ଷ । ଦୁଇଟି, ସ୍ଵଟେଟି ପୁଅ ଝିଅ—ଗାଁ ମୁଣ୍ଡ ବଉଳ ଚଉତରାରେ ଇସ୍କୁଲ ଖୋଲ ହେଲ ।

ସେ ବ ଥିଲ ଏଇ ଶୀତ ଦିନ । ଚିରାଫଟା ଲୁଗା ଘୋଡ଼େଇ ହୋଇ ବସି କୋଚଲ ଖଡ଼ରେ ମଇଳା ମୁହିଁ ଖଡ଼ଗାର ପକା ଦେହରେ ସାନ ସାନ ପୁଅ ଝିଅ ଚଉତରାରେ ସିଦ୍ଧରସ୍ତୁ କଲେ । କେଇଟା ଦିନ । ବଉଳ ମୂଳେ ଥାନ ନିଅଣ୍ଟ । ଠେଲ ପେଲ । ମାଷ୍ଟ୍ରେ, ମୋ ଜାଗାରେ ସଇତା ବସିଛୁ । ମାଷ୍ଟ୍ରେ, କନ ମତେ ଚିମୁଟି ଦେଲ । କେତେ ଗୁହାରି, କେତେ ନିଶାପ, କେତେ ହସ । କେତେ କାନ୍ଦ ।

ଗାଁ ଟୋକାଏ ମନକୁ ମନ ଭେଦା କରି ଏଇ ଇସ୍କୁଲ ଘର ଉଠେଇଲେ । ଖଣ୍ଡେ ବାଟରେ ମାଷ୍ଟ୍ରଙ୍କ ପାଇଁ ଦି' ବଖୁରିଆ ମାଟିଘର । ହରିହର ମାଷ୍ଟ୍ରେ ଗାଁରୁ ସ୍ତ୍ରୀଙ୍କୁ ଆଣିଲେ । ଘର ବାନ୍ଧଲେ । ମାଟି ଘରେ ଲକ୍ଷ୍ମୀ ହସିଲେ । କୋଳ, ଛୁଇଁ, ପଣପରିବାରେ ବାଗ ଉଛୁଳଲ ।

ଚଉଦଶ ବର୍ଷ ହେଲ, କାଲ ପରି ଲଗୁଛି ପୁଅ ଜନ୍ମ ହେଲ, ଗାଁଟା ସାକର ସତେ କି ପୁଅ ହୋଇଛି । କଞ୍ଚା ପାଚଲ, ଫଳ ଫୁଲର ଯିଏ

ଯାହା ପାଇଲେ ହାତରେ ଧରି ପୁଅ ମୁହଁ ଦେଖିଲେ । ଅଗଣାରେ ଥାଳ ହେଲାନ ଜିନିଷ । ସବୁରି ନିଜର । ସବୁରି ଆପଣାର । ପର କେହି ନାହିଁ ।

ସେ କାଳର ମଣିଷ କେତେ କିଏ ମରି ହଜି ଗଲେଣି । ତାଙ୍କ ପୁଅ ନାତି ମଣିଷ ହେଲେଣି । ପଣ୍ଡିତେ ଡାକ ରହିଯାଇଛି । ତାଙ୍କ ନିଜ ପୁଅ ଆଜି ଗୃହକରି କଲ୍ଣି । ବାହାସାହା ହୋଇ ଘର କଲ୍ଣି । ସ୍ତ୍ରୀ ତାଙ୍କର ଆଜି ଗାଁର ସବୁ ଅଧା ବୁଢ଼ା ଅଧା ବୁଢ଼ୀଙ୍କର ନାମ । ସବୁ ପିଲା ଛୋକାଙ୍କର ମା' । ଏଇ ସ୍କୁଲ ହରି ପଣ୍ଡିତଙ୍କ ଜୀବନ । ତାଙ୍କରି ହାତଗଢ଼ା ପିଲାଏ କେତେ କୁଆଡ଼େ ନାଁ କଲେଣି । ସେ ନ ହେଲେ ନ ଚଳେ । ଗଢ଼ିବା କାମ ଛାଡ଼ି ସେ କ'ଣ କରିବେ !

ଭେଁ ଭେଁ କାନ୍ଦ, ଓଢ଼ଣା ତଳୁ ନାକ ପୋଛା, ଧାର ଧାର ପାଣିରେ ସଭା ମଉଳିଲା । ସବୁ ଭାରି ଏଇ ନୂଆ ମାଷ୍ଟ୍ରେ ନେବେ ? କେତେ କଥା ସେ କହିଲେ ସଭାରେ । ସରକାର କେତେ ଜିନିଷ ଦେବେ ଇସ୍କୁଲକୁ । ଇସ୍କୁଲ ଆହୁରି ବଡ଼ ହବ । ଯୋଉ ମନ ଥିଲେ ମାଟି କାଦୁଅରେ ପଚ ପଚ ହୋଇ ପିଲାଙ୍କ ଲୁହ ସିଙ୍ଘାଣି ଦେହରେ ବୋଳି ଲୁଖୁରା ମୁଣ୍ଡ ଖେଙ୍କାଳିଆ ଭୁଣ୍ଡି, କରିଆ ପିନ୍ଧା କଙ୍କାଳ ଦେହକୁ ଆପଣାର କରି ତା ପିଲାଟିକି ପୁଅ କି ଝିଅ କରିହେବ ସେ ମନ କିଏ ଦବ ? ଗାଡ଼ି ନ ପାହୁଣୁ ପିଲାଏ ଛୁଟିବେ ଇସ୍କୁଲକୁ । କିଏ ଆଗ ? ଇସ୍କୁଲ ବାରିରେ ଅଳିଆଟିଏ ନାହିଁ । ମାଟି ପିଣ୍ଡା ସଫାସୁତୁରା । ପଡ଼ା ତ ନୁହେଁ, ଆମେ ପିଇପିବୁ । ତେମେ ଯାହା କହିବ ସେ ଆମର ଅମୃତ ବଚନ । ଆମକୁ ଶିଖା, ଆମକୁ କହ । ଆମେ ପାଠ ପଢ଼ିବୁ ।

ଅଧା ମଇଳା ଜାମା ଉପରେ ଗଜରା ମାଳ, ବେକ ନଇଁ ଯାଉଛି । ଆହା, ଏତେଗୁଡ଼ାଏ ଗେଣ୍ଡୁ ଫୁଲ କାହିଁକି ଛୁଣ୍ଡେଇଲ ରେ ଚଗଲ !

କୁହା ନାହିଁ, ପୋଛା ନାହିଁ, ଗାଡ଼ି ଘଡ଼ିଏ ଥାଉ ଦ'ଖଣ୍ଡି ଶଗଡ଼ ଦୁଆରେ ଛିଡ଼ା ହୋଇଛି । ମାଷ୍ଟ୍ରେ ଯିବେ, ତାଙ୍କ କାମ ପାଇଁ ଆଉ କୁହାପୋଛା କ'ଣ ? ସମସ୍ତଙ୍କ କାମ ସେ ।

ସିନ୍ଦୂର ଫାଟିଲଣି । ଝଣ୍ଟେ ଶଗଡ଼ରେ ଜନୀଷପତ୍ର ନଦା ସରିଛି । କେଯାଏ ବା ଜନୀଷ, ଘର ଅଗଣାରେ ଗାଁଠା ଯାକର ମାଇପେ ରୁଣ୍ଡ



ହୋଇଛନ୍ତି । ଦାସଘର ବର୍ଦ୍ଧକର ବୋଗିଣା ପୁଅକୁ କାଖରେ ଧରି ହରି ପଣ୍ଡିତଙ୍କ ସ୍ତ୍ରୀ ଛଳ ଛଳ ଆଖି, ହସିଲ ମୁହଁରେ ଛିଡ଼ା ହୋଇଛନ୍ତି ।

କିନ୍ତୁ ପଣ୍ଡିତେ କାହାନ୍ତି ? କୁଆଡ଼େ ଗଲେ ? ଏତେବେଳ ହେଲ, ଅନ୍ଧାର ଥାଉ ଥାଉ ବାହାରି ପଡ଼ିଥିଲେ ଦ୍ୱ'ପହର ସରିକି ଗାଁରେ ତାଙ୍କର ପହଞ୍ଚ ଯାଇଥା'ନ୍ତେ ।

ନୂଆ ମାଷ୍ଟ୍ରେ ତାଟି ଫିଟେଇ ସ୍କୁଲକୁ ପଶିଲେ । କଏ କେଉଁଠି ଠକ୍ ଠକ୍ କଲଣି ଏତେ ସକାଳୁ ? ଏ ଦୁଷ୍ଟ ଟୋକାଙ୍କୁ ପାରି ହବନି । କୋଉଠି କ'ଣ ଗୋଟେ ଭଙ୍ଗାରୁଠା କଲେଣି ; କିନ୍ତୁ ଏ କ'ଣ ? ଇସ୍କୁଲ ବଗିଚା କଣରେ ହରି ପଣ୍ଡିତେ ପଟା ଖଣ୍ଡେ ଧରି କ'ଣ କରୁଛନ୍ତି ! ମନ ମଜ୍ଜି ଯାଇଛି । ହାତକେ କଣ୍ଟା ହାତକେ ହାତୁଡ଼ି ।

ମଣିଆ ଧଇଁସଇଁ ହୋଇ ଦଉଡ଼ୁଛି ।

ମାଷ୍ଟ୍ରେ ଆଜ୍ଞା···ମା' ଗାଡ଼ିରେ ବସିଲେଣି···ସେ ଥ' ହୋଇ ଛିଡ଼ା ହୋଇଗଲ ।

ଯାଉଛୁ, ଗ୍ଭଲେ । ଦେଖୁନୁ ଚଗଲା ଛୁଆ ଦୋଳ ଖେଳିବାକୁ କ'ଣ ହେଉଛନ୍ତି ବାଡ଼ଆପିଠା । ଏ ଖଣ୍ଡ ବସେଇ ଦିଏ । ଛୁଆଗୁଡ଼ା କେତେ ଖୁସିରେ ଖେଳିବେ । ତୋ'ର ପୁଅ ତ ଦୋଳ ନାଆଁକୁ ବେଶି ବାଇ । ତାକୁ କହିବୁ, ଏଥର ମନ ଦେଇ ଅଙ୍କ କରିବ ।

ମଣିଆ ଗ୍ଭହିଁଛୁ । ନୂଆ ମାଷ୍ଟ୍ରେ ଗ୍ଭହିଁଛନ୍ତି । କାହାର ମୁହଁରେ କଥା ନାହିଁ ।

ଠକ୍ ଠକ୍···ଏ କିଏ ? ମାଷ୍ଟ୍ରେ ? ସତ୍···ସତ୍···

# ଗୋଧୂଳିର ସ୍ୱପ୍ନ

## ଅଧ୍ୟାପକ ଜଗନ୍ନାଥ ମହାନ୍ତି

ଜୀବନର ଗୋଧୂଳି । କର୍ମମୟ ଦିନ ସରି ଆସୁଛି । ସାଧନାର ଶେଷ ଭାଗରେ ପାଦ ଦେଇ ଅରୁଣ ଦାସ ଭାବ ବୃଳଛନ୍ତି ଆକାଶ ପାତାଳ । ନିଜର ସ୍ୱଭାବ ବିକାଶ କରିବାକୁ ମନ ତାଙ୍କର ଆଜି ଆକୁଳ ହୋଇ ଉଠିଛି । ପଛରେ ତାଙ୍କର ଦୀର୍ଘ ଷାଠିଏ ବର୍ଷର କର୍ମମୁଖର ଜୀବନ । ଚଳଚ୍ଚିତ୍ର ପରି କେତେ ବିଚିତ୍ର ଦୃଶ୍ୟ ତାଙ୍କର ମନୋନେତ୍ରରେ ନାଚି ଯାଉଛି । ଆଗରେ ଅଜ୍ଞାତ ଅନାଗତ । ସବୁ ଅନ୍ଧାର, ଗଭୀର ଅନ୍ଧାର । ଅରୁଣଙ୍କ ମନରେ ସତେ ଯେପରି ଛାଇ ଆଲୁଅର ଲୁଚକାଳି ଖେଳ ଲାଗିଛି ।

ତାଙ୍କର ମନେ ପଡ଼ିଯାଉଛି ଆଜି ଚାଳିଶ ବର୍ଷ ତଳର କଥା । ବିଶ୍ୱବିଦ୍ୟାଳୟର ଶ୍ରେଷ୍ଠ କୃତୀ ଛାତ୍ର ଭାବରେ ସେଦିନ ସେ ଯେତେବେଳେ ଡିଗ୍ରୀ ଗ୍ରହଣ କରୁଥିଲେ, ହଜାର ଲୋକଙ୍କର କରତାଳିରେ ସମାବର୍ତ୍ତନ ଉତ୍ସବ ମୁଖରିତ ହୋଇ ଉଠିଥିଲା । ଫଟୋଗ୍ରାଫରମାନଙ୍କ ସଟ୍‌ସାଟ୍ ଆଲୋକଚିତ୍ର ଗ୍ରହଣ କଲାବେଳେ ତାଙ୍କର ଆଖି ଝଲସି ଯାଉଥିଲା । ସେ ତରୁଣସୁଲଭ ଗର୍ବରେ ଉତ୍‌ଫୁଲ୍ଲ ଓ ଉଲ୍ଲସିତ ହୋଇ ପଡ଼ୁଥିଲେ ।

ସହପାଠିନୀ କେତେକ ରୂପସୀ ତାଙ୍କର ପ୍ରଣୟପ୍ରାର୍ଥିନୀ ହୋଇଥିଲେ । କେତେ ଧନିକ, ଉଚ୍ଚପଦସ୍ଥ କର୍ମଚାରୀ ସେମାନଙ୍କ କନ୍ୟା ପାଇଁ ତାଙ୍କୁ ଜାମାତାରୂପେ ମନେ ମନେ ବରଣ କରିଥିଲେ । ଅରୁଣଙ୍କ ପିତାମାତା, ବନ୍ଧୁବାନ୍ଧବ ଦୃଢ଼ ଆଶା ପୋଷଣ କରିଥିଲେ ସେ ଗୋଟିଏ ଡେପୁଟୀ ଚାକିରି ପାଇ ବଡ଼ ହାକିମ ହେବେ । କିନ୍ତୁ ଏ ସମସ୍ତଙ୍କୁ ନିରାଶ କରି ଅରୁଣ ବାଛି ନେଲେ ଏକ ନିଃସଙ୍ଗ, ନିରାଡ଼ମ୍ବର, ସରଳ ଓ ସାବଲମ୍ବୀ ଜୀବନ ।

ରାଧାନାଥ ଟ୍ରେନିଂ କଲେଜରେ ଶିକ୍ଷକତା ପାଇଁ ତାଲିମ ପାଇଁ ଅରୁଣ ଜାତୀୟ ବିଦ୍ୟାଳୟରେ ପ୍ରଧାନ ଶିକ୍ଷକ ହୋଇଥିଲେ । ଅନୁନ୍ନତ

ଅଶିକ୍ଷିତ ଅଞ୍ଚଳରେ ଶିକ୍ଷାଲୋକର ବିଚ୍ଛୁରଣ କରିବାକୁ ତାଙ୍କର ଅଦ୍ୟମ ଉଦ୍ୟମ, ଅବିଶ୍ରାନ୍ତ ପରିଶ୍ରମ । ଲୋକମାନଙ୍କ ମଧ୍ୟରେ ଆଧୁନିକ ଯୁଗକୁ ସ୍ପର୍ଶି ନୂତନ ଚେତନା ଓ ଜାଗରଣ ଆଣିବା ଦିଗରେ ସେ ନେତୃତ୍ୱ ନେଲେ । ନୂଆ ବିଦ୍ୟାଳୟଟି ତାଙ୍କର ଅପୂର୍ବ ସଂଗଠନ ଶକ୍ତିରେ ସମୃଦ୍ଧ ହୋଇ-ଉଠିଲା । ବିଦ୍ୟାଳୟଟି କେବଳ ଜ୍ଞାନ ଦାନର ପୀଠ ନ ହୋଇ ସମାଜର ଏକ ଅଫୁରନ୍ତ ପ୍ରାଣକେନ୍ଦ୍ର ହୋଇ ପଡ଼ିଲା ।

କିନ୍ତୁ ଅରୁଣଙ୍କର ପରମ ପ୍ରିୟ କାର୍ଯ୍ୟ ହେଲା ଶିକ୍ଷାଦାନ । ଶିକ୍ଷକତା ତାଙ୍କର ଏକ ବୃତ୍ତି ନୁହେଁ, ଏହା ତାଙ୍କର ଜୀବନ । ଶିକ୍ଷକତା ବ୍ୟତୀତ ତାଙ୍କର ଜୀବନ ଜୀବନ ନୁହେଁ, ସେ ଅନୁଭବ କଲେ । ଶିକ୍ଷାଦାନକୁ ସେ ଅନ୍ତରର ସହିତ ଉପଭୋଗ କଲେ ।

ଯେତେ ଅମନୋଯୋଗୀ ପିଲା ହେଲେ ମଧ୍ୟ ସେ ତାକୁ ବୁଝାଇ-ସୁଝାଇ ପାଠରେ ମନ ଲଗାଇଛନ୍ତି । ଘରମୁହାଁ ପିଲାଙ୍କୁ ବିଦ୍ୟାଳୟ ପ୍ରତି ଆକୃଷ୍ଟ କରାଇଛନ୍ତି । ପାଠ ପଢ଼ାଇବାକୁ ଇଚ୍ଛା କରୁ ନ ଥିବା ଅଭିଭାବକଙ୍କୁ କହିବୋଲି ସେ ଅନେକ ପିଲାଙ୍କର ଭବିଷ୍ୟତ ଉଜ୍ଜ୍ୱଳ କରିଛନ୍ତି । କୃପଣ, ଧନୀ ମହାଜନଙ୍କୁ ସେବା କାର୍ଯ୍ୟରେ ଉଦ୍‌ବୁଦ୍ଧ କରି ସ୍କୁଲର ଅଭାବ ପୂରଣ କରାଇଛନ୍ତି । କିଏ କିଏ କହନ୍ତି, "ଅରୁଣବାବୁ କ'ଣ କମିଆଁ ଜାଣିଛନ୍ତି ସତେ !" ଆଉ କିଏ କହନ୍ତି, "ଅରୁଣବାବୁଙ୍କ ମୁହଁରେ କ'ଣ ଅଛି କେଜାଣି, ସେ ଯାହା କହିବେ, ତାହା ଲଙ୍ଘିବାକୁ କାହାର ସାହସ ହୁଏନାହିଁ ।"

ଅନେକେ ତାଙ୍କୁ କହନ୍ତି ସ୍ୱପ୍ନଜୀବୀ । ଏହି ମାଟି-ମରତରେ ସେ ସରଗର ସୁଷମା ସୃଷ୍ଟି କରିବାକୁ ଇଚ୍ଛା କରନ୍ତି । ଊଷର ମରୁକୁ ସେ ଶସ୍ୟଶ୍ୟାମଳ କରିବାର କଳ୍ପନା କରନ୍ତି । ଏହି କଳ୍ପନା ତାଙ୍କର ଅବାନ୍ତର ନୁହେଁ, ଏହି ସ୍ୱପ୍ନ ତାଙ୍କର ଅଳୀକ ହୁଏନାହିଁ । ତାର ଜୀବନ୍ତ ଦୃଷ୍ଟାନ୍ତ ହେଉଛି ଅନୁନ୍ନତ ଅଞ୍ଚଳର ଅଲୋକସ୍ତମ୍ଭ ଜାତୀୟ ବିଦ୍ୟାଳୟ ଆଉ ସହସ୍ର ସହସ୍ର ଛାତ୍ରଛାତ୍ରୀ, ଯେଉଁମାନଙ୍କର ଅବୁଝା ମନକୁ ବୁଝାଇ, କାଠବଣା ସ୍ୱଭାବକୁ ବଦଳାଇ ସେ ସେମାନଙ୍କୁ ସଂସାରରେ ସାର୍ଥକ ମନୁଷ୍ୟ କରି ତୋଳିଛନ୍ତି । ପ୍ରକୃତରେ ସ୍ୱପ୍ନ ହିଁ ସଫଳ ଶିକ୍ଷକତାର ଲକ୍ଷଣ ।

ଅରୁଣବାବୁ ଜଣେ ସୁଦକ୍ଷ ଶିଳ୍ପୀ । ଶିକ୍ଷକତା-ଶିଳ୍ପରେ ଏକ ନିଖୁଣ କାରିଗର । କେଉଁ ପିଲା ଭିତରେ କି ବିଶେଷ ଗୁଣ ରହିଛି, କେଉଁ ପିଲାର କେଉଁ ଦୋଷତ୍ରୁଟି ରହିଯାଇଛି, କେଉଁ ପିଲାକୁ କିପରି ଭାବରେ ଗଢ଼ିଲେ ଓ ଶିକ୍ଷା ଦେଲେ ସେ ଭଲ ମଣିଷ ହେବ, ତାହା ତାଙ୍କୁ ଅତି ନିର୍ଭୁଲ ଭାବରେ ଜଣା । ପ୍ରତ୍ୟେକ କଳିକାକୁ ସୁନ୍ଦର ସୁବାସ କୁସୁମରେ ପରିଣତ କରିବାରେ ମାଳୀ ଯେପରି ସୁଯୋଗ ଦିଏ, ପ୍ରତ୍ୟେକ ଶିଶୁ ତଥା କିଶୋରକୁ ତାର ପୂର୍ଣ୍ଣ ବିକାଶରେ ସାହାଯ୍ୟ କରିବା ସେହିପରି ତାଙ୍କର କର୍ତ୍ତବ୍ୟ ବୋଲି ଅରୁଣବାବୁ ଭାବି ଆସିଛନ୍ତି । ଏହା ସେ କୌଣସି ବାଧ୍ୟବାଧକତା ଭିତରେ କରନ୍ତି ନାହିଁ, ଏଥିରେ ସେ ଅଶେଷ ଆନନ୍ଦ ଉପଭୋଗ କରନ୍ତି । ତାଙ୍କର ବିଶ୍ୱାସ, ଶିକ୍ଷାଦାନର ଆନନ୍ଦାନୁଭୂତି କୌଣସି ମୂଲ୍ୟରେ ମପାଯାଇ ପାରେ ନାହିଁ । ଏହା ଅମୂଲ୍ୟ ଓ ଅସୀମ, ଆଉ ଏକାନ୍ତ ବ୍ୟକ୍ତିଗତ ଓ ହାର୍ଦ୍ଦିକ ।

କିନ୍ତୁ ଦୀର୍ଘ ଖୋଳିଶ ବର୍ଷ ଭିତରେ ସେ ନିଜ ପାଇଁ କ'ଣ କରିଛନ୍ତି, କ'ଣ ବା ସେ ପାଇଛନ୍ତି ? ଶିକ୍ଷକତାକୁ ଏକ ବ୍ରତ ଭାବରେ ଧରି ସେ ନିଜର ସମସ୍ତ ବ୍ୟକ୍ତିଗତ ସୁଖସୁବିଧାରେ ଜଳାଞ୍ଜଳି ଦେଇଛନ୍ତି । ପାରିବାରିକ ଜଞ୍ଜାଳରୁ ରକ୍ଷା ପାଇବା ପାଇଁ ସେ ବିବାହ କରିବାକୁ ରାଜି ହୋଇ ନ ଥିଲେ । ସେ ପ୍ରଥମେ ଆସି ଯେଉଁ ଭଡ଼ାଘରେ ବସା ବାନ୍ଧିଥିଲେ, ସେହି ଘରଟିରେ ସେ ଆଜିସୁଦ୍ଧା ଅଛନ୍ତି । ନିଜର ବୋଲି ବଖରାଏ ଘର ତୋଳିବା ତାଙ୍କଦ୍ୱାରା ସମ୍ଭବ ହୋଇନାହିଁ । ଦୀର୍ଘକାଳ ପରେ ମଧ୍ୟ ତାଙ୍କର ସେହି ସରଳ ପୋଷାକ ପରିଚ୍ଛଦ; ସେହି ଶିଶୁସୁଲଭ ଚାଲିଚଳନ ।

କ୍ରମେ ଅନୁନ୍ନତ ସ୍ଥାନଟି ଉନ୍ନତ ହୋଇ ଉଠିଛି । ପଲ୍ଲୀଟି ନଗରରେ ପରିଣତ ହୋଇଛି । ଅନେକ ଅଫିସ ଅନୁଷ୍ଠାନ ମୁଣ୍ଡ ଟେକିଛି । ଶହ ଶହ ସରକାରୀ, ବେସରକାରୀ କର୍ମଚାରୀ, ଶିଳ୍ପପତି, ବ୍ୟବସାୟୀ, ସାହିତ୍ୟିକ, ଠିକାଦାରମାନଙ୍କ ମଧ୍ୟରେ ଅରୁଣବାବୁ ଆଜି ହଜି ହଜି ଯାଉଛନ୍ତି । ସେ ମନେ କରନ୍ତି କେହି ତାଙ୍କ କୃତିତ୍ୱକୁ ସ୍ମରଣ କରନ୍ତି ନାହିଁ । ତାଙ୍କର ଅତୀତର ସମସ୍ତ କାର୍ଯ୍ୟକୁ ଆଜି ପ୍ରତ୍ୟେକ ଯେପରି ଭୁଲି ଭୁଲି ଯାଉଛନ୍ତି । ଥରେ ଥରେ ସେ ଏ କଥା ଚିନ୍ତାଏ ଭାବନ୍ତି, କିନ୍ତୁ ଦୁଃଖ କରନ୍ତି ନାହିଁ ।

ବର୍ତ୍ତମାନ ସେ ବୃଦ୍ଧ । ସମସ୍ତଙ୍କ ସହିତ ସମକକ୍ଷ ହୋଇ ଚାଲିବା ତାଙ୍କ ପକ୍ଷେ ସମ୍ଭବ ହେଉନାହିଁ । ସମସ୍ତଙ୍କ ସବୁ କଥାରେ ତାଳ ଦେଇ ଚାଲିବାକୁ ସେ ଆଜି ଅକ୍ଷମ । ମନ ଓ ଦେହ ଉପରେ ବାର୍ଦ୍ଧକ୍ୟର ଗୁରୁ ଚାପ ଲଦିହୋଇ ପଡ଼ୁଛି । ତା ସହିତ ନାନା ପ୍ରକାର ରୋଗର ଆକ୍ରମଣ ତାଙ୍କୁ ସର୍ବଦା ବ୍ୟସ୍ତ ବିବ୍ରତ କରୁଛି । ସେହି ସ୍କୁଲ, ସେହି ଶ୍ରେଣୀଗୃହ, ସେହି ପାଠ୍ୟ ନିର୍ଘଣ୍ଟ, ସେହି ବାହାର ସୀମିତ ପରିସର ମଧ୍ୟରେ ସେ କିପରି ଏକ ହାଙ୍ଗୁଡ଼ାଣ ଭାବ ଅନୁଭବ କରିଛନ୍ତି ।

ଶେଷରେ ଗଡ଼ପଡ଼ ହୋଇ ଅରୁଣବାବୁ ଭାବୁଛନ୍ତି, ମୋର ଏ ଜୀବନଟା କ'ଣ ତେବେ ବୃଥା ହୋଇଗଲା ? ଏତେ ବିରାଟ କଳ୍ପନା, ଉଚ୍ଚ ଭାବନା ନେଇ ସେ ଯେଉଁ ଶିକ୍ଷକତା କର୍ମ ( ବୃତ୍ତି ବୋଲି କହିବାକୁ ସେ ଅନିଚ୍ଛୁକ ) ଗ୍ରହଣ କରିଥିଲେ ତାହା କ'ଣ ବ୍ୟର୍ଥ ହେଲା ? ତାଙ୍କର ଏତେ ତ୍ୟାଗ, ଏତେ ପରିଶ୍ରମ କ'ଣ ମୂଲ୍ୟହୀନ ? ଏ ସବୁ ପ୍ରଶ୍ନର ଉତ୍ତର କିଏ ଦେବ ? ବୃଦ୍ଧ ଅଭିଜ୍ଞ ଶିକ୍ଷକଙ୍କର ହୃଦୟ ଆଜି ବିଳାପ କରିଉଠୁଛି । ମନରେ ଘୋର ଆନ୍ଦୋଳନ ଓ ବିରାଟ ଗ୍ଲାନି ! ତାଙ୍କର ଆଖି ଦୁଇଟିରେ କ୍ରମେ ତନ୍ଦ୍ରା ଘୋଟି ଆସୁଛି ।............

ଘୋର ସୁଷୁପ୍ତିରେ ବୁଡ଼ିରହି ଅରୁଣ ସ୍ୱପ୍ନ ଦେଖୁଛନ୍ତି । ଭୀଷଣ ଲୋକାରଣ୍ୟ । ଗୋଟିଏ ବିରାଟ ଶୋଭାଯାତ୍ରା କାହିଁ କେଉଁଆଡ଼େ ଆଗକୁ ଲମ୍ବି ଯାଇଛି । ତାଙ୍କର ଆଖି ପାଉନାହିଁ । ପ୍ରଥମେ ସେ ଦେଖୁଛନ୍ତି ରାସ୍ତାର ଦୁଇକଡ଼ରେ ଛୋଟ ଛୋଟ ପିଲା ଠିଆ ହୋଇଛନ୍ତି । ତା'ପରେ କ୍ରମେ ବଡ଼ ବଡ଼ ପିଲା, ତରୁଣତରୁଣୀ, ଯୁବକଯୁବତୀ ଧାଡ଼ି ଧରି ଠିଆ ହୋଇଛନ୍ତି । ସମସ୍ତେ ମସ୍ତକ ଅବନତ କରି ତାଙ୍କୁ ସମ୍ମାନ ପ୍ରଦର୍ଶନ କରୁଛନ୍ତି । ପୁଷ୍ପମାଳ୍ୟ ଅର୍ପଣ କରି ଅନେକେ ତାଙ୍କର ପଦଧୂଳି ଗ୍ରହଣ କରୁଛନ୍ତି । ରାସ୍ତା ଉପରେ ସୋରିଷଟିଏ ପକାଇବାକୁ ସ୍ଥାନ ନାହିଁ । ପୁଷ୍ପବୃଷ୍ଟିରେ ତାହା ଯେପରି ଆଚ୍ଛାଦିତ ହୋଇ ଯାଇଛି । ଶୋଭାଯାତ୍ରାରେ ସମସ୍ତଙ୍କୁ ଅରୁଣ ଜାଣି ପାରୁଛନ୍ତି । ଅନେକଙ୍କର ନାମ ବି ତାଙ୍କର ମନେ ପଡ଼ିଯାଉଛି । ସମସ୍ତ ପ୍ରିୟ ଛାତ୍ରଛାତ୍ରୀ ଆପଣାର ପୁତ୍ରକନ୍ୟାପ୍ରତିମ । କେତେ କାହାକୁ ବା ସେ କ'ଣ ପଚାରିବେ ? ଯେତେ ଯାହାକୁ ପଚାରିଲେ ବି ପ୍ରଶ୍ନ ସରୁନାହିଁ । ଯେତେ



ଯାହା ଶୁଣିଲେ ବି ମନ ବୁଝୁନାହିଁ । ଏକ ସମୟରେ ସମସ୍ତଙ୍କୁ ଦେଖି ମନ ତାଙ୍କର ଆକୁଳ ଅଥୟ ହୋଇ ଉଠୁଛି । ଯେତେ ଯେପରି ହଜିଥିବା ଗଣ୍ଠି ଧନଗୁଡ଼ିକୁ ସେ ଖୋଜି ପାଇଛନ୍ତି ।

ସେ ମନଦେଇ ଶୁଣି ଯାଉଛନ୍ତି ନିଜ ଛାତ୍ରଛାତ୍ରୀମାନଙ୍କର ବିଶେଷ କୃତିତ୍ୱ ! ସେମାନଙ୍କ ଜୀବନର ଗୌରବମୟ ଗାଥା । ସେମାନଙ୍କ ଭିତରୁ ଆଜି କିଏ ଡାକ୍ତର, କିଏ ଅଧ୍ୟାପକ, କିଏ ମନ୍ତ୍ରୀ, କିଏ ରାଷ୍ଟ୍ରଦୂତ, କିଏ ବ୍ୟବସାୟୀ, କିଏ ବା କୃଷକ । ଅରୁଣବାବୁ ସେମାନଙ୍କର ଛାତ୍ରାବସ୍ଥାରୁ ଏ ସବୁ ବୃତ୍ତିରେ ପ୍ରତ୍ୟେକଙ୍କର ଆଗ୍ରହ ଓ ଦକ୍ଷତା ଲକ୍ଷ୍ୟ କରିଥିଲେ । ସେମାନେ କ୍ରମେ ନିଜ ନିଜର ଉପଯୁକ୍ତ ପଥ ବାଛି ନେଇଛନ୍ତି । ଶିକ୍ଷା, ସ୍ୱାସ୍ଥ୍ୟ, ଶାସନ, ବ୍ୟବସାୟ, କୃଷି ଆଦି ବିଭିନ୍ନ ଧାରାରେ ସେମାନେ ଜାତିର ସେବା କରୁଛନ୍ତି । ସେମାନେ ସମସ୍ତେ ଏଥିପାଇଁ ଗର୍ବିତ ଏବଂ ଦେଶ ସେମାନଙ୍କ ପାଇଁ ଗୌରବାନ୍ୱିତ । ସମସ୍ତଙ୍କ ମୁହଁରୁ ବୃଦ୍ଧ ଅରୁଣବାବୁ ଶୁଣିଲେ ନିଜର କରଣୀ ଓ କୃତିତ୍ୱ, ଆଉ ସମସ୍ତଙ୍କ ଜୀବନ-ପଥରେ ଦେଖିଲେ ନିଜର ସ୍ପଷ୍ଟ ସ୍ୱାକ୍ଷର ଓ ଅସ୍ତିତ୍ୱ । ତାଙ୍କର ମନେହେଲା ଯେତେ ଯେପରି ବିଶ୍ୱର ବିରାଟ ମୁକୁରରେ ତାଙ୍କର ବ୍ୟକ୍ତିତ୍ୱ ପ୍ରତିବିମ୍ବିତ ହେଉଛି

ଏବଂ ମହାକାଳର ଅସୀମ ଗହ୍ୱର ଭିତରେ ତାଙ୍କର ମର୍ମବାଣୀ ପ୍ରତିଧ୍ୱନିତ ହୋଇ ଉଠୁଛି, ନିଜର ଅଗଣିତ ସ୍ୱଷ୍ଟ-ସମାଜ ମାଧ୍ୟମରେ ।

ଅରୁଣବାବୁ ସ୍ତମ୍ଭୀଭୂତ ହୋଇ ଯାଉଛନ୍ତି । ସେ ନିର୍ବାକ୍ ଓ ନିଷ୍ପନ୍ଦ ।

ହଠାତ୍ ତାଙ୍କର ନିଦ୍ରା ଭାଙ୍ଗିଗଲା । ସେ ଖୁବ୍ ଜୋର୍‌ରେ ଶେଯରୁ ଉଠି ପଡ଼ିଲେ । ଶରୀରର ସମସ୍ତ ଶିରା ଧମନୀରେ ସେ ଉଷ୍ମ ରକ୍ତର ପ୍ରବାହ ଅନୁଭବ କଲେ । ଏ କ'ଣ ସେ ଦେଖିଲେ ? ସ୍ୱପ୍ନ ନା ସତ୍ୟ ! ନିଦ୍ରା ନା ଜୀବନ !! ସାଧନା ନା ସିଦ୍ଧି !!

# ମଣିଷ ପରି ମଣିଷଟିଏ

ଅଧ୍ୟାପକ ଅମରେନ୍ଦ୍ର ପ୍ରସାଦ ଗିରି

ଅବସରପ୍ରାପ୍ତ ଆଇ. ଏ. ଏସ୍. ଅଫିସର ଦୀନବନ୍ଧୁବାବୁ ଆଜ ଗାଆଁର ଜଣେ ମାନ୍ୟଗଣ୍ୟ ବ୍ୟକ୍ତି । ଚାକିରିରୁ ଅବସର ନେବା ପରେ ସେ ସିଧା ଆସିଥିଲେ ତାଙ୍କର ଏହି ମଫସଲର ଭିଟାମାଟିକୁ । ଜୀବନର ଶେଷ ସମୟଟା ସେ ସେଇଠି କଟେଇ ଦେବେ । ଏଇ ଗାଆଁର ପାଣି ପବନରେ ସେ ଏତୁଟିରୁ ଏତୁଟିଏ ହୋଇଛନ୍ତି । ଗାଆଁ ଆମ୍ବତୋଟା, ବିଲ, ବେତକୋଳି ବଣ, ପୋଖରୀ ସବୁ ଯେମିତି ଆଜ ତାଙ୍କ ଆଖିରେ ନୂଆ । ଚାକିରି ସମୟଟକ ସେ ବାହାରେ ବାହାରେ କଟେଇଛନ୍ତି । ଗାଆଁକୁ ଆସିବାକୁ ସମୟ ପାଇ ନାହାନ୍ତି କି ଇଚ୍ଛା ବି କରି ନାହାନ୍ତି । ହେଲେ ଆଜ ସବୁଥିଁରେ ସେ ଯେମିତି ନୂତନ ପରଶ ଅନୁଭବ କରୁଛନ୍ତି । ·

ତାଙ୍କ ପିଲାବେଳେ ଗାଆଁରେ ଥିଲା ଗୋଟିଏ ବୋଲି ପ୍ରାଇମେରୀ ସ୍କୁଲ । ସେଇ ପ୍ରାଇମେରୀ ସ୍କୁଲ ଏବେ ବି ଅଛି । ତା'ଛଡ଼ା ମାଇନର ସ୍କୁଲ ଆଉ ହାଇସ୍କୁଲ । ସମୟର ରଥଚକରେ ସବୁ ଆଜ ବଦଳିଛି । ପିଲାଏ ପାଠ ପଢ଼ିବାକୁ ଅନ୍ୟ କୁଆଡ଼େ ଯାଉ ନାହାନ୍ତି । ଘରେ ରହି ପଢ଼ିବାର ସୁଯୋଗ ପାଉଛନ୍ତି । ହେଲେ ଏ ସବୁ ଅନୁଷ୍ଠାନ ଗଢ଼ିବା ସମ୍ଭବ ହେଲା କେମିତି ? ଯାହାଙ୍କ ଚେଷ୍ଟାରେ ଆଜ ଏ ସବୁ ମୁଣ୍ଡ ଟେକିଛି ସେ ଆଜ ନାହାନ୍ତି । ଗାଆଁ ଲୋକଙ୍କର ଉନ୍ନତି ଦେଖିବାକୁ ସେ ଆଜ ବଞ୍ଚି ନାହାନ୍ତି । ନୀରବ ସାଧକ ସେ, ଆଜ ନୀରବରେ ଫେରି ଯାଇଛନ୍ତି । ତାଙ୍କୁ ସମ୍ବର୍ଦ୍ଧନା ଜଣେଇବାକୁ ପଟୁଆର ବାହାରି ନାହିଁ କି ସଭା ସମିତି ଜରିଆରେ ଫୁଲତୋଡ଼ା ଦିଆଯାଇନାହିଁ । କର୍ମୀ ସେ । କାମ କରି ଯାଇଛନ୍ତି । କାହାରି ପ୍ରଶଂସା ବା ନିନ୍ଦାକୁ ଅପେକ୍ଷା ରଖି ନାହାନ୍ତି । ସେହି ସେ ନରହରି ମାଷ୍ଟ୍ରେ । ପ୍ରାଇମେରୀ ସ୍କୁଲର ପ୍ରତିଷ୍ଠାତା ଓ ଶିକ୍ଷକ । ଖାଲି ପ୍ରାଇମେରୀ କାହିଁକି, ମାଇନର ଏବଂ ହାଇସ୍କୁଲ ମଧ୍ୟ ତାଙ୍କରି ହାତରେ ତିଆରି । ହେଲେ, କଲେଜ ହେବା ସେ ଦେଖି ପାରିଲେନି ।

ଯୋଉଦିନ ନରହରି ମାଷ୍ଟ୍ରେ ପ୍ରଥମ ହୋଇ ଏ ଗାଆଁକୁ ଆସିଲେ ସେତେବେଳେ ଗାଆଁ ଲୋକେ ତାଙ୍କୁ ଦେଖି ନ ଦେଖିଲା ପରି ବାଟ କାଟିଥିଲେ । ହେଲେ, ସେ ଘର ଘର ବୁଲି ଲୋକଙ୍କୁ ଦେଖା କରିଥିଲେ । ପିଲାମାନଙ୍କୁ ସ୍କୁଲକୁ ପଠାଇବାକୁ ନିବେଦନ କରିଥିଲେ । କେହି ବା ତାଙ୍କ କଥାରେ ହଁ ଭରିଥିଲେ, ଆଉ କେହି ବା ମୁହଁ ମୋଡ଼ିଥିଲେ ।

ପିଲାଏ ପାଠ ପଢ଼ି ଲାଭ ବା କ'ଣ ? ବାପ ମାଆଙ୍କୁ କାମରେ ସାହାଯ୍ୟ କରିବା ପିଲାଙ୍କ କର୍ତ୍ତବ୍ୟ । ସେମାନେ ବଡ଼ ହେଲେ ବାପାଙ୍କ ବେଉସାକୁ ଆଦରି ନେବେ । ଆଉ ଏଇ ଗାଆଁର ପାଣି ପବନରେ ସେମାନେ ବଢ଼େଇବେ ନିଜର ଛୁଆଙ୍କୁ । ଠିକ୍ ସେମିତି ସେମାନଙ୍କର ବାପାମାନେ ବଢ଼େଇଥିଲେ । ଏଇମିତି ପୁରୁଷ ପୁରୁଷ କଟିଛି ଏଇ ଗାଆଁରେ । ମାଟି ସାଙ୍ଗରେ ମାଟି ହୋଇ କାମ କରିବାରେ ଆନନ୍ଦ ଅଛି । ସେଇ ମାଟିରେ ଫଳେ ସୁନା । ଆଉ ସେଇ ସୁନାରେ ନିତିଦିନିଆ ସଂସାର ଚଳେ ।

ନରହରି ମାଷ୍ଟ୍ରେ ଭାଙ୍ଗିପଡ଼ ନ ଥିଲେ କି ଦବିଯାଇ ନ ଥିଲେ । ଏ ତାଙ୍କ ଜୀବନରେ ଏକ ପରୀକ୍ଷା । ଏଥିରେ ତାଙ୍କୁ କୃତକାର୍ଯ୍ୟ ହେବାକୁ ହିଁ ପଡ଼ିବ । ଆଉ ଏହି ସଫଳତା ଉପରେ ତାଙ୍କ ଭବିଷ୍ୟତ ନିର୍ଭର କରେ । ସେ ଦ୍ୱିଗୁଣ ଉତ୍ସାହରେ ମାତି ଉଠିଥିଲେ ।

ତାଙ୍କରି ଚେଷ୍ଟାରେ ପ୍ରଥମେ ଗଢ଼ା ହୁଏ ଏଇ ପ୍ରାଇମେରି ସ୍କୁଲଟି । ଘର ଘର ବୁଲି ନାନା କଥା, ନାନା ଖୋସାମତିରେ ସଂଗ୍ରହ କଲେ କେତୋଟି ପିଲା । ସେଇ ପିଲାମାନଙ୍କୁ ନେଇ ପ୍ରଥମେ ସେ ଏଇ ଗାଆଁର ପବନରେ ଏକ ନୂଆ ଗନ୍ଧ ଭରିଦେଲେ । ପିଲାମାନଙ୍କ ପାଠପଢ଼ାରେ ଗାଆଁ କମ୍ପିଲା । ପାଠପଢ଼ା ସମୟ ବାଦ୍ ଘର ଘର ବୁଲି ବାପ ମାଆଙ୍କୁ ସ୍କୁଲ ପ୍ରତି ଆକୃଷ୍ଟ କରେଇବା ହେଲା ତାଙ୍କର ରୁଟିନ୍‌ବନ୍ଧା କାମ । ଆସ୍ତେ ଆସ୍ତେ ପିଲା ସଂଖ୍ୟା ବଢ଼ିବାରେ ଲାଗିଲା—ଏକରୁ ଦୁଇ, ଦୁଇରୁ ଚାରି ।

ଗୋଟିଏ ଓଳି ସ୍କୁଲ ହୁଏ । ଆଉ ଗୋଟିଏ ଓଳି ସେ ପିଲାଙ୍କୁ ଛାଡ଼ନ୍ତି ବାପା ମାଆଙ୍କୁ କାମରେ ସାହାଯ୍ୟ କରିବାକୁ । ନିଜେ ବୁଲି ବୁଲି

ଦେଖନ୍ତି ପିଲାଏ ଘରେ ପଢ଼ୁଛନ୍ତି କି ନାହିଁ । ନରହରି ମାଷ୍ଟ୍ରେ ଥିଲେ ସ୍କୁଲର ସବୁ କିଛି । ସ୍କୁଲ କହିଲେ ତାଙ୍କୁ ହିଁ ବୁଝାଉଥିଲା । ସେ ପଢ଼ଉଥିଲେ, ଖାତାପତ୍ରରେ ହିସାବ ରଖୁଥିଲେ, ଘଣ୍ଟା ବାଡ଼ଉଥିଲେ, ପିଲାଙ୍କୁ ଘରୁ ନେଉଥିଲେ, ଆଉ ପଢ଼ା ସରିଲେ ଛାଡ଼ି ଆସୁଥିଲେ ।

ମାଷ୍ଟ୍ରଙ୍କର କାମ ଦେଖି ଗାଆଁବାଲାଏ ଶ୍ରଦ୍ଧାଭେଦା କରି ସ୍କୁଲରେ ନୂଆ ବଖରା କେତୋଟି ତୋଳି ଦେଇଥିଲେ । ହତା ଚାରିପଟ ବାଡ଼ ବୁଜିଥିଲେ । ପିଲାମାନଙ୍କୁ ଧରି ମାଷ୍ଟ୍ରେ ହତା ଭିତରେ ଗଛ କେତୋଟି ଲଗାଇଥିଲେ । ସେଇ ଗଛ ଭିତରୁ ନଡ଼ିଆ ଗଛ କେତୋଟି ଆଜି ସୁଦ୍ଧା ଫଳୁଛି ଏବଂ ସ୍କୁଲର ଆୟ ବୃଦ୍ଧିରେ ସାହାଯ୍ୟ କରୁଛି ।

ସେତେବେଳକୁ ଦୀନବନ୍ଧୁବାବୁଙ୍କ ବୟସ ମାତ୍ର ଛଅ । ବାପା ହିନସାବ ବଳରେ ଖଟନ୍ତି । ବର୍ଷସାରା ଖଟି ଖଟି ଯାହା ପାଆନ୍ତି ସେଥିରେ ସେ ଚଳାନ୍ତି ନିଜର ଛୋଟ ପରିବାରଟିକୁ । ତଥାପି ଅଣ୍ଟେନା । ପହିଲେ ପହିଲେ ବାପା ରାଜି ହଉ ନ ଥିଲେ ତାଙ୍କୁ ସ୍କୁଲ ପଠାଇବାକୁ । କିନ୍ତୁ ନରହରି ମାଷ୍ଟ୍ରଙ୍କର ନାନା ଅନୁରୋଧ ପରେ ସେ ପୁଅର ନାମ ଲେଖେଇଲେ ।

ସେଦିନର କଥା ଏବେ ବି ଦୀନବନ୍ଧୁବାବୁଙ୍କର ପରିଷ୍କାର ମନେଅଛି । ନରହରି ମାଷ୍ଟ୍ରେ ପିଲାଙ୍କ ପ୍ରତି ଯେତିକି ସ୍ନେହୀ, ପାଠ ନ କଲେ ସେ ସେତିକି କଠୋର ହେଉଥିଲେ । ଦିନେ ଦୀନବନ୍ଧୁବାବୁ ସ୍କୁଲ ପଢ଼ା କରିପାରି ନ ଥିଲେ । ମାଡ଼ ଭୟରେ ସେ ସ୍କୁଲ ଯିବା ବି ବନ୍ଦ କରିଦେଲେ । କିନ୍ତୁ ନରହରି ମାଷ୍ଟ୍ରେ ଛାଡ଼ୁଛନ୍ତି କେତେବେଳେ ? ସେ ଆସି ଘରୁ ଡାକି ନେଇଗଲେ । ପଢ଼ା କରି ନ ଥିବାରୁ ଦୀନବନ୍ଧୁ ଖାଲି କାନ୍ଦିବାକୁ ଲାଗିଲେ । ମାଷ୍ଟ୍ରେ ଯେତେ ପଚାରିଲେ ବି ସେ କିଛି କହିଲେ ନାହିଁ । ଗାଳି ମାଡ଼ରୁ ରକ୍ଷା ମିଳିଲା ସେଦିନ । ସନ୍ଧ୍ୟାକୁ ମାଷ୍ଟ୍ରେ ଆସି ତାଙ୍କ ଘରେ ହାଜର । ଦେଖିଲେ ଘରେ ଅନ୍ଧାରର ରାଜତ୍ୱ । କଥା କ'ଣ ? ବୁଝୁଁ ବୁଝୁଁ ଜାଣିଲେ ଯେ କିରାସିନି ନାହିଁ କି କିରାସିନି କିଣିବାକୁ ପଇସା ବି ନାହିଁ । ଯାହା ଟୋପେ ନାଆଁକୁ ଅଛି ସେତିକ ଉପରରେ ପଢ଼ା ସେରେଇ କାମ ହଉଚି ।

ମାଷ୍ଟ୍ରଙ୍କ ମନେ ପଡ଼ିଗଲା ଧାନବନ୍ଧୁଙ୍କର ସ୍କୁଲ ପାଠ ନ କରିବା କଥା । ସେ ବୁଝିଲେ ପିଲାର ଦୁଃଖ । ତାଙ୍କ ବାପାଙ୍କ ଅନୁମତି ନେଇ ସେଇଦିନଠାରୁ ନିଜ ଘରେ ତାଙ୍କୁ ପଢ଼ିବାର ସୁଯୋଗ ଦେଲେ । କେବଳ ଧାନବନ୍ଧୁ ନୁହନ୍ତି, ଏମିତି ଗାଆଁର ଅନେକେ ପଢ଼ିଲେ ମାଷ୍ଟ୍ରଙ୍କ ପାଖରେ । ହେଲେ ମାଷ୍ଟ୍ରେ ସେଥିପାଇଁ ପଇସାଟିଏ ନିଅନ୍ତି ନାହିଁ ।

ସେଦିନର କଥା ଏବେ ବି କାଳପରି ମନେ ପଡୁଛି । ପରୀକ୍ଷା ପାଖେଇ ଆସୁଛି । ମାଷ୍ଟ୍ରଙ୍କର ତାଗିଦା । ପରୀକ୍ଷା ଫିସ୍ ଠିକ୍ ସମୟରେ ଦେବାକୁ ହେବ । ନ ହେଲେ ପରୀକ୍ଷାରେ ବସି ପାରିବ ନାହିଁ । ପିଲାଏ ଲାଗିଛନ୍ତି ପାଠପଢ଼ାରେ । ମାଷ୍ଟ୍ରଙ୍କର ଏତେ ଟିକିଏ ବି ହେଳା ନାହିଁ । ପିଲାଏ ଭଲ କଲେ ସ୍କୁଲର ନାଁ ବଢ଼ିବ । ସେଇଥିରେ ତ ମାଷ୍ଟ୍ରଙ୍କର ଆନନ୍ଦ । ତା'ଛଡ଼ା ତାଙ୍କର ଆଉ କିଛି ଲୋଡ଼ା ନାହିଁ । ପିଲାଏ ସେ ତାଙ୍କର ପରିବାର । ସେଇ ପରିବାରକୁ ସମସ୍ତେ ପ୍ରଶଂସା କରନ୍ତୁ, ସମସ୍ତେ ବାହାବା ଦିଅନ୍ତୁ ।

ବାପାଙ୍କଠାରୁ ପରୀକ୍ଷା ଫିସ୍ ନେଇଥିଲେ ଧାନବନ୍ଧୁ ସ୍କୁଲରେ ଦେବା ପାଇଁ । ହେଲେ ସାଙ୍ଗସାଥୀଙ୍କ ମେଳରେ ପଡ଼ି ସେ ଖର୍ଚ୍ଚ କରି ବସିଲେ ଗାଆଁ ମେଲଣରେ । କାହାକୁ କହିବେ ? ନିଜେ ତ ଭୁଲ କରି ବସିଛନ୍ତି । ଖର୍ଚ୍ଚ ବେଳେ ପିଲାଏ ଜୁଟିଗଲେ । ଏବେ ସାହାଯ୍ୟ କରିବାକୁ କେହି ନାହାନ୍ତି । ସେ ଯୁଆଡ଼େ କିଛି ନା କିଛି ବାହାନା ଦେଖେଇ ଖସି ଚାଲିଗଲେ । ଧାନବନ୍ଧୁଙ୍କୁ ଚାରିଆଡ଼େ ଅନ୍ଧାର ଦିଶିଲା । ସେ କରିବେ କ'ଣ ? ଘରକୁ ଫେରିବେ କେମିତି ? ବାପା ଯୋଉଭଳିଆ ରାଗୀ ଲୋକ କ'ଣ ନା କ'ଣ କରି ବସିବେ । ହୁଏତ ମାରୁ ମାରୁ ମାରିଦେଇ ପାରନ୍ତି । ନା, ଘର ଛାଡ଼ି ସେ ଚାଲିଯିବେ । ଦୂରକୁ । ବହୁ ଦୂରକୁ । ଯୋଉଠିକି ବାପାଙ୍କ ଶାସନର ହାତ ପାଇବନି । ଏଇ କଥା ଭାବି ଭାବି ସେ ଆଗକୁ ଗୋଡ଼ ବଢ଼େଇଲେ ।

ହଠାତ୍ କାହା ପାଟିରେ ସେ ଚମକି ଉଠିଲେ । ଏ କ'ଣ ? ଆଗରେ ସେ ନରହରି ମାଷ୍ଟ୍ରେ । ତାଙ୍କରୁ ଚାଲିପାସାକେ ତାଙ୍କର ଦେହ ଥରିଗଲା । ପାଟି ଅଠା ଅଠା ହୋଇଗଲା । କଥା ବାହାରିଲା ନାହିଁ । "କୁଆଡ଼େ ଯାଉଚୁ ଏ ଅନ୍ଧାରରେ"—ମାଷ୍ଟ୍ରଙ୍କ ମୁହଁରେ ଶାସନର ଧମକ ।

ସତେ କି ତାଙ୍କ ମନର ବାଲିବନ୍ଧ ଭୁଷୁଡ଼ି ପଡ଼ିଲା । ସେ କଇଁ କଇଁ ହୋଇ କାନ୍ଦି ଉଠିଲେ ।

ଆଉ କିଛି ନ ପଚାରି ନରହରି ମାଷ୍ଟ୍ରେ ତାଙ୍କ ହାତ ଧରି ଡାକି ନେଇଥିଲେ ଘରକୁ । ହାତ ମୁହଁ ଧୋଇବାକୁ କହି ପିଜୁଳି ଦେଇଥିଲେ ଖାଇବାକୁ । ଆଉ ସେ ପ୍ରକୃତିସ୍ଥ ହେଲା ପରେ ଧୀରେ ଧୀରେ ତାଙ୍କଠାରୁ କଥା ଆଦାୟ କରିଥିଲେ । ସେତିକିରେ ତାଙ୍କ କର୍ତ୍ତବ୍ୟ କିନ୍ତୁ ଶେଷ ହୋଇ ନ ଥିଲା । ଭବିଷ୍ୟତରେ ଏଭଳି ଅନ୍ୟାୟ କାମ କରିବେ ନାହିଁ ବୋଲି ସେ ତାଙ୍କଠାରୁ ପ୍ରତିଶ୍ରୁତି ନେଇଥିଲେ । ଆଉ ଘନବନ୍ଧୁଙ୍କ ପାଇଁ ତାଙ୍କ ବାପାଙ୍କଠାରୁ କ୍ଷମା ମାଗିନେବା ପରେ ପୁଅ ପ୍ରତି କଠୋର ନ ହେବାକୁ ସେ ତାଙ୍କ ବାପାଙ୍କୁ ଅନୁରୋଧ କରିଥିଲେ ।

ଘନବନ୍ଧୁ ବାବୁଙ୍କ ଆଖି ଆର୍ଦ୍ର ହୋଇ ଉଠିଲା । ଏ ହେଉଛି ବିଗତ ସ୍ମୃତିର କେତୋଟି ଛିନ୍ନ ପୃଷ୍ଠା । ଏଯାଏ ବି ତାଙ୍କ ମନର କେଉଁ କୋଣରେ ଲେଖା ହୋଇ ରହିଛି ।

ଏଇ ନରହରି ମାଷ୍ଟ୍ରଙ୍କ ପାଇଁ ସେ ଆଜି ଏତେ ବଡ଼ ହୋଇ ପାରିଛନ୍ତି । ହୁଏତ ସେ ନ ଥିଲେ ତାଙ୍କ ଜୀବନର ଗତି ଅନ୍ୟ କେଉଁଆଡ଼େ ଗଡ଼ିଯାଇ ଥାଆନ୍ତା । ତାଙ୍କର ବ୍ୟକ୍ତିଗତ ଚେଷ୍ଟାରେ ଆଜି କେବଳ ସେ ନୁହନ୍ତି, ଗାଆଁର ଆହୁରି ଅନେକେ ବି ସମାଜର ଜଣେ ଜଣେ ପ୍ରତିଷ୍ଠିତ ବ୍ୟକ୍ତି ।

ସେ ନାହାନ୍ତି । ହେଲେ ତାଙ୍କ ସ୍ମୃତି ଆଜି ବି ଲୋକମୁଖରେ ରହିଛି । ସେ ନିଜ ପାଇଁ କିଛି କରିଯାଇ ନାହାନ୍ତି । ଯାହା କରିଛନ୍ତି ପିଲାଙ୍କ ଭଲ ପାଇଁ, ଲୋକଙ୍କ ଉନ୍ନତି ପାଇଁ, ସମାଜର ମଙ୍ଗଳ ପାଇଁ । ସେ କାହାର ପ୍ରଶଂସାକୁ ଅପେକ୍ଷା ରଖି ନାହାନ୍ତି କି କାହାର ନିନ୍ଦାକୁ ବି ଭ୍ରୂକ୍ଷେପ କରିନାହାନ୍ତି ।

ଗାଆଁର ସଭିଙ୍କ ପାଖରେ ସେ ପରିଚିତ ଥିଲେ ନରି ମାଷ୍ଟ୍ରେ ହିସାବରେ । ସେ ଆଜି ମରଜଗତରୁ ଚାଲି ଯାଇଥିଲେ ବି ତାଙ୍କ ଗୁଣରେ ଗଢ଼ିଯାଇଛନ୍ତି ଭବିଷ୍ୟତ ବଂଶଧରମାନଙ୍କୁ, ଯେଉଁମାନେ କି ସମାଜର ଦାୟିତ୍ୱସମ୍ପନ୍ନ ନାଗରିକ । ସେମାନେ ଦେଶକୁ ଗଢ଼ିବେ, ଉତ୍ତମ ଚରିତ୍ରର

ନାଗରିକ ସୃଷ୍ଟି କରିବେ । ଏ ବିଦ୍ୟାଳୟ ଥିବାଯାଏ ଗାଆଁର ସଭିଏଁ ମନେ ରଖିବେ ନରି ମାଷ୍ଟେରଙ୍କୁ, ଯୋଉଠାରେ କି ତାଙ୍କର ଅମର ଆତ୍ମା ଶାନ୍ତି ପାଇଛି ।

କିନ୍ତୁ ଦୀନବନ୍ଧୁ ବାବୁ ଏଡ଼େ ବଡ଼ ଉଚ୍ଚ ପଦବୀର ଅଧିକାରୀ ହୋଇ କ'ଣ କେବେ ସୁଖୀ ହୋଇଛନ୍ତି ? ନା । ଅଧିକ ଟଙ୍କା ରୋଜଗାର କରିବାର ନିଶା ତାଙ୍କୁ ଅଶାନ୍ତ କରି ତୋଳିଛି । ସେ ଯାହା କିଛି କରିଛନ୍ତି ନିଜ ପାଇଁ, ନିଜର ପରିବାର ପାଇଁ । ସମାଜ ପାଇଁ ନୁହେଁ । ସେ ସ୍ୱାର୍ଥପର । ନିଜର ସ୍ୱାର୍ଥ ସାଧନରେ ବ୍ୟସ୍ତ ରହି ସେ ନିଜର କର୍ତ୍ତବ୍ୟ ଭୁଲିଛନ୍ତି । ନରି ମାଷ୍ଟେରଙ୍କ ଶିକ୍ଷାର ଉଚିତ ସମ୍ମାନ ସେ ଦେଇନାହାନ୍ତି ।

ଏବେ ସେ ସମୟ ଆସିଛି । ସେ ଆଜି ନିଜ ଜୀବନକୁ ପ୍ରଥମ ଥର ପାଇଁ ବିଶ୍ଳେଷଣ କରୁଛନ୍ତି । ତାଙ୍କୁ ତାଙ୍କ ଶିକ୍ଷାର ଉଚିତ ମୂଲ୍ୟ ଦେବାକୁ ପଡ଼ିବ । ନରି ମାଷ୍ଟେରଙ୍କର କାମ ଅସମ୍ପୂର୍ଣ୍ଣ ରହିଛି । ତାକୁ ସମ୍ପୂର୍ଣ୍ଣ କରିବାର ଦାୟିତ୍ୱ ଦୀନବନ୍ଧୁ ବାବୁଙ୍କ ଉପରେ । ସେ ସଂକଳ୍ପ ନେଲେ ଏଇ ଗାଆଁରେ ଦିନେ ଯେଉଁ ଶ୍ରେଷ୍ଠ ସ୍କୁଲଟି ଗଢ଼ି ଉଠିଥିଲା ବ୍ୟକ୍ତିଗତ ପ୍ରଚେଷ୍ଟାରେ, ସେଇ ଗାଆଁରେ ଆଜି ସାମୂହିକ ଉଦ୍ୟମରେ ପ୍ରତିଷ୍ଠା କରାଯିବ କଲେଜଟିଏ । ନରି ମାଷ୍ଟେରଙ୍କ ଅମର ଆତ୍ମା ଉଦ୍ଦେଶ୍ୟରେ ଲୁହ ଦୁଇ ବୁନ୍ଦା ତାଳି ସମ୍ମାନ ଜଣେଇବା ସଙ୍ଗେ ସଙ୍ଗେ ଶପଥ ନେଇଥିଲେ ଅବସର ଗ୍ରହଣ କରିଥିବା ସରକାରଙ୍କ ଉଚ୍ଚପଦସ୍ଥ ହାକିମ ଦୀନବନ୍ଧୁ-ବାବୁ ।

# କି ହେଲାରେ

## ଶ୍ରୀ ଉଦୟନାଥ ଷଡ଼ଙ୍ଗୀ

ଅପ୍ରେଲ ମାସର ସନ୍ଧ୍ୟା ସମୟ । କଟକ ନଗର କାଠଯୋଡ଼ି ନଦୀକୂଳର ବଡ଼ବୁରୁଜ ଉପରେ ଏକାକୀ ବସିଥିଲି ; ଲକ୍ଷ୍ୟହୀନ ଭାବରେ ନଦୀଗର୍ଭ ଓ ବନ୍ଧ ଉପରେ ଗତାଗତ ଲୋକମାନଙ୍କ ଗତିବିଧି ଦେଖୁଥାଏ । ଅଳ୍ପ ସମୟ ମଧ୍ୟରେ ଜଣ ଜଣ ହୋଇ ଆଉ ତିନିଜଣ ବନ୍ଧୁ ଆସିଲେ, ମୋ ପାଖରେ ପଥର ବେଞ୍ଚରେ ବସିଲେ ।

ସମସ୍ତେ ବୃଦ୍ଧ—ବୟସ ସତୁରି ଟପି ଅଶୀକୁ ଧକ୍କା ଦେବାକୁ ବସିଲେଣି । ପରାଧୀନ ଭାରତରେ ଜନ୍ମ ; ସେହି ଅମଳର ଶିକ୍ଷାଦୀକ୍ଷା, ପୁଣି କେହି କାହାର ଅପରିଚିତ ନୁହନ୍ତି ।

କ୍ରମେ ନାନା ବିଷୟରେ ଆଲୋଚନା ଢନେଇ ଉଠିଲା । ଏ ଯୁଗର ଶିକ୍ଷାର୍ଥୀ, ଯୁବକଯୁବତୀ ଓ ଛାତ୍ରଛାତ୍ରୀଙ୍କ ବେଶପୋଷାକ, ଚାଲିଚଳଣି ଓ ଆଚାରବ୍ୟବହାର କଥା ମୁଖ୍ୟ ସ୍ଥାନ ଅଧିକାର କଲା ।

କଥା ପ୍ରସଙ୍ଗରେ ଅଲ୍ପଦିନ ତଳେ ଘଟିଯାଇଥିବା ଗୋଟିଏ ଅନୁଭୂତି ମୁଁ ବର୍ଣ୍ଣନା କଲି ।

‘‘ଜଣେ ବନ୍ଧୁଙ୍କ ସହିତ କଥାବାର୍ତ୍ତା ହୋଇ ଜନଗହଳି ବଜାର ମଧ୍ୟରେ ଚାଲୁଥିଲି । ବନ୍ଧୁ ଜଣକ ସଦ୍ୟ ଅବସର ଗ୍ରହଣ କରିଥିବା ଜଣେ ନାମଜାଦା ଅଧ୍ୟାପକ । ଓଡ଼ିଶା ବାହାରେ ଏପରିକି ଆନ୍ତର୍ଜାତିକ କ୍ଷେତ୍ରରେ ତାଙ୍କର ବେଶ୍ ଖାତିର ଅଛି । ଭାରତର ବିଭିନ୍ନ ବିଶ୍ୱବିଦ୍ୟାଳୟର ଅନୁରୋଧରେ ତାଙ୍କ ଗବେଷଣାମୂଳକ ବକ୍ତୃତା ଦେଇ ଖ୍ୟାତି ଅର୍ଜିଛନ୍ତି । ଇଉରୋପ, ଆମେରିକା, ମସ୍କୋ ମଧ୍ୟ ଦୁଇଚାରି ଥର ବୁଲି ଆସିଛନ୍ତି ସେ ସବୁ ଅଞ୍ଚଳର ବିଶ୍ୱବିଦ୍ୟାଳୟର ନିମନ୍ତ୍ରଣ ପାଇ ।

‘‘ଫଟା ଢଣ୍ଟାରେ ଧାହାର ବସିଲି ପରେ ହଠାତ୍ ଗୋଟାଏ ପାଖରୁ ଶବ୍ଦ ଶୁଭିଲା—ସାର୍, ନମସ୍କାର ।

"ଉଭୟେ ଏକ ସମୟରେ ମୁହିଁ ଟେକ ଗୁହିଁଲୁ । ଦୁଇଜଣ ଅତ୍ୟାଧୁନକ ଯୁବକ—ବଶ୍ୱବଦ୍ୟାଳୟର ଛାତ୍ର ଗୋଟିଏ ସାଇକେଲରେ ବସି ଅତ ଜୋର୍‌ରେ ଆମକୁ ଧକ୍‌କା ଦେଇ ଆଗକୁ ଗୁଲଗଲେ । ପଛରୁ ସେମାନଙ୍କ ଗୋଡ଼ର ରଙ୍ଗୀନ ନଳୀ ପ୍ୟାଣ୍ଟ, ଦେହର ହରରଙ୍ଗୀ ଫୁଲପକା ଛୁଟ କନାର ଜାମା ଓ ପିଠି ପର୍ଯ୍ୟନ୍ତ ଲମ୍ବି ଆସିଥିବା ମୁଣ୍ଡର କୁଞ୍ଚିତ କୁନ୍ତଳ ଦେଖାଗଲା । ଆଉ ମଧ୍ୟ ଜଣାଗଲା, କ୍ରୁରୀକା ହସର ଉଦ୍ଦାମ ତେଜ ଉଭୟଙ୍କ ସର୍ବାଙ୍ଗ ଥରାଇ ଦେଉଛି ।

"ସାର୍, ନମସ୍କାର" ଶବ୍ଦଟା ଗୁରୁଭକ୍ତିର ନଦର୍ଶନ ହେଲେ ମଧ୍ୟ ତାହା ଅତ ତାଚ୍ଛଲ୍ୟକର ବ୍ୟଙ୍ଗୋକ୍ତି ପରି ବୋଧ ହେଲା । ଅଧ୍ୟାପକ ଗୋଟିଏ ଦୀର୍ଘନଃଶ୍ୱାସ ପକାଇ କହିଲେ, "ଦୁଇ ବର୍ଷ ତଳେ ପରୀକ୍ଷା ଖାତାରେ ଅଧିକ ନମ୍ବର ଦେଇ ନ ଥିଲି ବୋଲି ପିଠିରେ ସାଇକେଲ ଚେନର ଯେଉଁ ଗୁବୁକ ଏହି ପିଲାଙ୍କଠାରୁ ପାଇଥିଲି, ଏ ନମସ୍କାର ତାଠାରୁ ବେଶି ଯନ୍ତ୍ରଣାଦାୟକ ।"

ମୋର ହଠାତ୍ ପଚ୍ଚଶ ବର୍ଷ ତଳର ଗୋଟିଏ ମୁହୂର୍ତ୍ତ ମନରେ ଖେଳଗଲା । ଏହି ପଚ୍ଚଶ ବର୍ଷ ଭିତରେ ଆମେ, ଆମ ଦେଶ ଓ ଆମ ଯୁବସମାଜର ଅଗ୍ରଗତ ଯେ କେତେଦୂର ହୋଇଛି, ତାହା ତୁଳନା କରାଯାଇପାରେ ।

ସ୍ୱର୍ଗୀୟ ପଣ୍ଡିତ ଲଙ୍ଗରାଜ ମିଶ୍ର ସେତେବେଳେ 'ସତ୍ୟବାଦୀ ବହାର'ର ଅନ୍ୟତମ ଶିକ୍ଷକ । ସତ୍ୟବାଦୀ ବହାର ଗୋଟିଏ ହାଇସ୍କୁଲ ମାତ୍ର, ଛାତ୍ରମାନେ ପ୍ରାୟ ସମସ୍ତେ ଛାତ୍ରାବାସରେ ରହନ୍ତି—ଗ୍ରୀଷ୍ମଛୁଟି ବା ଦୋଳଛୁଟିରେ ଯାହା କେତେ ଦନ ପାଇଁ ଗ୍ରାମକୁ ଯାଆନ୍ତି । ଛୁଟିରେ ଛାତ୍ରାବାସ ଛାଡ଼ିବା ପୂର୍ବରୁ ବା ଛୁଟି ପରେ ଛାତ୍ରାବାସକୁ ଫେରିଲେ ସମସ୍ତ ଶିକ୍ଷକଙ୍କୁ ଦୁଇ ହାତ ଯୋଡ଼ ଅଣ୍ଟାଠାରୁ ମୁଣ୍ଡକୁ ନୁଆଁଇ ଭୂଇଁ ସହିତ ସମାନ୍ତରାଳ କରି ଅର୍ଥାତ୍ ପାଦଠାରୁ ମୁଣ୍ଡ ପର୍ଯ୍ୟନ୍ତ ଗୋଟିଏ ଓଡ଼ିଆ ଆଠ ସଂଖ୍ୟା ସୃଷ୍ଟି କରି ନମସ୍କାର କରୁଥିଲେ ।

ସେହି ସମୟର ପ୍ରାୟ ପନ୍ଦର ବର୍ଷ ପୂର୍ବରୁ ହେମେନ୍ଦ୍ରବାବୁ ନାମକ ଜଣେ ବଙ୍ଗାଳୀ ଭଦ୍ରଲୋକ ରେଭେନ୍‌ସା କଲେଜର ଅଧ୍ୟାପକ ଥିଲେ । ଅବସର ଗ୍ରହଣ ପରେ କଲକତାରେ ନଜ ଘରେ ରହୁଥିଲେ । ପଣ୍ଡିତ

ଲିଙ୍ଗରାଜ ମିଶ୍ର ରେଭେନ୍‌ସା କଲେଜରେ ତାଙ୍କର ହଜାର ହଜାର ଛାତ୍ରଙ୍କ ମଧ୍ୟରୁ ଜଣେ ଥିଲେ । ହେମେନ୍ଦ୍ରବାବୁ ଜଗନ୍ନାଥ ଦର୍ଶନକୁ ପୁରୀ ଆସିଥିଲେ । କଲକତା ଫେରିବା ବାଟରେ ତାଙ୍କ ଛାତ୍ର 'ଲିଙ୍ଗରାଜ'ଙ୍କୁ ଦେଖିବା ପାଇଁ ସାକ୍ଷୀଗୋପାଳ ଷ୍ଟେସନରେ ଓହ୍ଲାଇ ସତ୍ୟବାଦୀ ହାଇସ୍କୁଲକୁ ଆସିଲେ ଓ ରାତିଟି ଛାତ୍ରାବାସରେ କଟାଇଲେ । ପରଦିନ ସକାଳେ ଖବର ପାଇ ପଣ୍ଡିତ ଲିଙ୍ଗରାଜ ନିଜ ଘରୁ ( ପ୍ରାୟ ତିନି କିଲୋମିଟର ଦୂର ହେବ ) ଚାଲି ଚାଲି—ଏକ ପ୍ରକାର ଦଉଡ଼ ଦଉଡ଼ ସ୍କୁଲକୁ ଆସିଲେ । ସେ ସ୍କୁଲହତା ଭିତରକୁ ପଶିପିବାମାତ୍ରକେ ହେମେନ୍ଦ୍ରବାବୁ ଚଉକିରୁ ଉଠି କେତେ ପାଦ ଆଗେଇ ଯାଇଥିଲେ । ପଣ୍ଡିତ ଲିଙ୍ଗରାଜ ପାଖରେ ପହଞ୍ଚିବାକ୍ଷଣି ଅଧ୍ୟାପକଙ୍କ ପାଦ ତଳେ ମୁଣ୍ଡିଆ ମାରିଲେ ଓ ପଦରେଣୁ ନେଲେ । ହେମେନ୍ଦ୍ରବାବୁ ଦୁଇ ହାତରେ ତାଙ୍କର ଏହି ପନ୍ଦର ବର୍ଷ ତଳର ବୃଦ୍ଧ ଛାତ୍ରଟିକୁ ତଳୁ ଉଠାଇ ଆଣି ଅତି ସ୍ନେହରେ ନିଜ କୋଳ ଭିତରେ ଜାକି ଧରିଲେ ଓ ତାଙ୍କ ମୁଣ୍ଡରେ ହାତ ବୁଲାଇଲେ, ଯାର୍ଘ ଦିନର ବିଚ୍ଛେଦ ପରେ ବୃଦ୍ଧ ପିତା ଯେପରି ନିଜର ଅତି ପ୍ରିୟ ନାବାଳକ ପୁଅଟିକୁ ଦେଖିଲାମାତ୍ରକେ ଉଦ୍‌ବେଳିତ ହୋଇଉଠେ, ଠିକ୍ ସେହି ଅବସ୍ଥା ସୃଷ୍ଟି ହୋଇଥିଲା ।

ସତ୍ୟବାଦୀ ସ୍କୁଲର ଛାତ୍ରମାନଙ୍କୁ ଏହି ଦୃଶ୍ୟ ଲଜ୍ଜାରେ ମ୍ରିୟମାଣ କରି ପକାଇଲା । ସେହିଦିନଠୁ ପ୍ରତି ଛୁଟି ପୂର୍ବରୁ ଏବଂ ପରେ ଛାତ୍ରମାନେ ପ୍ରତ୍ୟେକେ ଶିକ୍ଷକଙ୍କ ପାଦ ତଳେ ମୁଣ୍ଡିଆ ମାରି ନିଜ ନିଜର ଭକ୍ତି ଜଣାଇଲେ ।

ହିଗାସ୍ ବନ୍ଧୁ କହି ଉଠିଲେ, "ଆଜକାଲିର ପିତା-ପୁତ୍ର ସମ୍ପର୍କ କିପରି । ମୋର ଜଣେ ବନ୍ଧୁଙ୍କ ପୁଅ କଲେଜ ଛାତ୍ର, ନିଜ କାମ ହାସଲ କରିବା ପାଇଁ ମୋ ପାଖକୁ ଆସିଥିଲେ, ତାଙ୍କର ଟ୍ରାଉଟ ଜାମା ଉପରେ ସରୁ ଚେନ୍‌ର ପଦକ ଏବଂ ମୁଣ୍ଡର ଲମ୍ବା କେଶ ଦେଖି ମୁଁ ପ୍ରଥମେ ସେ ବାଳକ କି ବାଳିକା ବୁଝିପାରି ନ ଥିଲି । ଅନବରତ ସିଗାରେଟ ଧୂଆଁରେ ମୋ ଆଖି ଝାପ୍‌ସା ହୋଇଗଲା, ନାକ ରୁନ୍ଧ ହୋଇ ଆସିଲା, ମୋ ତାଙ୍କ ନାମ କହିବାରୁ ମୁଁ ପଚାରିଲି—ତୁମେ ଅମୁକଙ୍କ ପୁଅ ତ ? ଏହାର ଉତ୍ତର ସଙ୍ଗେ ସଙ୍ଗେ ମିଳି ନ ଥିଲା । କିଛି ସମୟ ଭାବିଚିନ୍ତି ସେ ଉତ୍ତର

ଧେଲେ—ହେଲେ ହୋଇଥିବ । ବୋଧହୁଏ, ସେହି ପିତାଙ୍କ ପୁଅ ବୋଲି ସ୍ୱୀକାର କରିବାକୁ ସେ ରାଜି ନ ଥିଲେ, କେବଳ ମୋର ଅତି ପରିଚିତ ବନ୍ଧୁ ବୋଲି ତାହା ଫାଙ୍କିଦେଇ ଯାଉଥିଲେ ନାହିଁ ।”

ଅନ୍ୟ ବୃଦ୍ଧ ବ୍ୟକ୍ତି କହିଲେ, “ପିଲାଟି ତ ବହୁତ ଭଲେ ରହିଛି । ଏ ଯୁଗ ମାଫିକ୍ ବୋଧହୁଏ ହେବାକୁ ତାକୁ ଆଉ କିଛି ସମୟ ଲାଗିବ । ମୋର ଜଣେ ବନ୍ଧୁଙ୍କ ପୁଅ ବିଶ୍ୱବିଦ୍ୟାଳୟର ସର୍ବୋଚ୍ଚ ଡିଗ୍ରୀପ୍ରାପ୍ତ ଯୁବକ, ସଭା ସମ୍ମିଳନୀରେ ପ୍ରଗଲ୍‌ଭ ବକ୍ତା । ନିଜ ଚଟି ଜୋତାରେ ପିତାଙ୍କ ଗାଲ ଫଟାଇ ଦେଇଥିବାର ମୁଁ ଜାଣିଛି । ପିତାଙ୍କର ଦୋଷ, ତାଙ୍କ ଅଳ୍ପ ଉପାର୍ଜନରେ ଘର ଚଳାଇ ପାରୁ ନ ଥିବାରୁ ପୁଅକୁ କୌଣସି ରୋଜଗାରର ପନ୍ଥା ଧରିବାକୁ ବାରମ୍ବାର ତାଗିଦା କଲେ ଏବଂ ତାଙ୍କ ବେଶ ପୋଷାକକୁ ନାପସନ୍ଦ କଲେ ।”

ବର୍ତ୍ତମାନ ଚତୁର୍ଥ ବନ୍ଧୁଙ୍କ ପାଳି । ସେ ଏପର୍ଯ୍ୟନ୍ତ ବଡ଼ ବିଷଣ୍ଣ ମନରେ ବସି ସବୁ କଥା ଶୁଣୁଥିଲେ । ସେହିପରି ଭାବରେ କହିଲେ, “ମୋ ନିଜର ଅଙ୍ଗରେ ଲାଗିଥିବା କଥା ଶୁଣନ୍ତୁ । କୁଳଚନ୍ଦ୍ରମା ତ ଗଲା ଚାରି ବର୍ଷ ହେଲା ଆଇ. ଏ. ପରୀକ୍ଷା ଦେଇ ଆସୁଛନ୍ତି, ଫଳ କିଛି ହେଉ ନାହିଁ । କିନ୍ତୁ ଆମ୍ଭଙ୍କଠାରୁ ପଇସା ନେଇ ସିନେମା ଦେଖା ଦିନେ ହେଲେ ବନ୍ଦ ନାହିଁ । ଆମ୍ଭଙ୍କ ପାଣ୍ଠି ଶେଷ ହୋଇଯିବାରୁ ମୋ ପକେଟରେ ହାତ ପଡ଼ିଲା । ମୁଁ ତାହା ବୁଝିପାରି ଅତି ବିରକ୍ତିର ସହିତ ଥରେ ଗୋଟାଏ ଚଟକଣା ପକାଇଲି । ଆଉ ଯାଏ କୁଆଡ଼େ ? ପରଦିନ ଖାଇପିଇ ଅଫିସକୁ ବାହାରିଛି—ଦାଣ୍ଡ ଦୁଆର ମୁହଁରେ ଦଳେ ଯୁବକ ଘେରାଉ କରିନେଲେ । ସମସ୍ତେ ମୋ ପୁଅର ବନ୍ଧୁ, ସାଙ୍ଗସାଥୀ । ଏକ ସମୟରେ ମୋ ଉପରେ ଚଡ଼ାଉ ହେଲା—କେଉଁ ଅଧିକାର ବଳରେ ଆପଣ ଆମ ବନ୍ଧୁକୁ ମାଇଲେ ? ମୁଁ ତ ରାଗି ଯାଇଥିଲି, ଟିକିଏ କଡ଼ା ସ୍ୱରରେ ଉତ୍ତର ଦେଲି—ମୋ ପୁଅକୁ ମୁଁ ଶାସନ କଲି; ତୁମର କ’ଣ ଗଲା ?”

ଆଉ କି ରକ୍ଷା ମିଳେ ? ସପ୍ତରଥୀ ଅଭିମନ୍ୟୁଙ୍କୁ ଆକ୍ରମଣ କଲାପରି ସମସ୍ତେ ମୋ ଉପରକୁ ଚଢ଼ି ଆସିଲେ । “ସେ ଆମର ବନ୍ଧୁ । ପୁଅକୁ ମାଡ଼ ଦେବାର ଅଧିକାର ସମ୍ବିଧାନ ଆପଣଙ୍କୁ ଦେଇନାହିଁ ।”

ମୋର ଅଫିସ ସମୟ ଗଡ଼ି ଯାଉଥାଏ । ମୁଁ ବିରକ୍ତିର ସହିତ କହିଲି, "ଥରକୁ ଥର ଫେଲ୍ ହେବାର, ଘରୁ ପଇସା ଚୋରାଇ ସିନେମା ଦେଖିବାର ଅଧିକାର ତାକୁ କିଏ ଦେଲା ?"

ଉତ୍ତର ଆସିଲା—ସମ୍ବିଧାନ । ସେ ବର୍ତ୍ତମାନ ନାବାଳକ ନୁହେଁ; ସ୍ୱାଧୀନ ଭାରତର ଜଣେ ସ୍ୱାଧୀନ ନାଗରିକ ।

"ଏ ତ କିଛି ନୂଆ କଥା ନୁହେଁ ।" ପଛଆଡ଼ୁ ଗୋଟିଏ ଅପରିଚିତ ଶବ୍ଦ ଶୁଣି ଆମେ ଦୁହେଁ ମୁହଁ ବୁଲାଇ ଚାହିଁଲୁ । ଜଣେ ତରୁଣ କେତେବେଳୁ ସେ ଇଟା ବେଞ୍ଚକୁ ଆଉଜି ଠିଆ ହୋଇ ଆମ କଥା ଯେ ଶୁଣୁଛନ୍ତି, ତାହା କେହି ଜାଣିପାରି ନ ଥିଲୁ ।

ତରୁଣ କହିଲେ, "ମୁଁ ଆଜିକାଲି ଯୁଗର ପିଲାମାନଙ୍କ ବ୍ୟବହାର କି କଥାବାର୍ତ୍ତା ସମ୍ପର୍କରେ କହୁନାହିଁ । ସେମାନଙ୍କ ବେଶପୋଷାକ, ବିଶେଷତଃ ସ୍ତ୍ରୀ ସୁଲଭ ବେଶସଜ୍ଜା ଆପଣମାନଙ୍କୁ ବେଶି ବିବ୍ରତ କରୁଛି । ଆପଣମାନେ ଯେତେବେଳେ ମୁଣ୍ଡର ପେଣ୍ଡିବାଳ କାଟି ଲଣ୍ଡା ହେଲେ, ବ୍ରାହ୍ମଣ ହୋଇ ନାକ ତଳେ ନିଶ ରଖିଲେ, ସେତେବେଳେ ଆପଣଙ୍କ ଅଜାମାନଙ୍କଠାରୁ ଏହିପରି ମନ୍ତବ୍ୟ ଶୁଣିଥିଲେ । ପୁଣି ଆମେ ଯେତେବେଳେ ଅଜା ହେବୁ, ଆମ ନାତିମାନଙ୍କ ଚାଲିଚଳନ, ହାବଭାବ, ବେଶପୋଷାକ ଦେଖି ଆପଣମାନଙ୍କ ଭଳି ସେମାନଙ୍କୁ ସମାଲୋଚନା କରିବୁ । ବର୍ତ୍ତମାନ ଆପଣମାନେ ଯେପରି ଦୁଃଖ କରୁଛନ୍ତି, ଆମେ ମଧ୍ୟ ସେହିପରି ଦୁଃଖ କରି କହିବୁ—"କି ହେଲା ରେ, କିଛି ତ ନୁହଇ ଭାରତରେ ।"

# ତୁମେ ସବୁରି ମାଆ

**ଅଧ୍ୟାପକ ଜଗନ୍ନାଥ ମହାନ୍ତି**

ଠନ୍ ଠନ୍ ଠନ୍, ଠନ୍ ଠନ୍ ଠନ୍, ଠ······ନ୍ ।

ନରେନ୍ଦ୍ରପୁର ବାଳିକା ସ୍କୁଲରେ ଘଣ୍ଟା ବାଜିଲା । ସବୁ ପିଲା ପ୍ରାର୍ଥନା ସାରି ନିଜ ନିଜ ଶ୍ରେଣୀକୁ ଗଲେ । ପ୍ରଧାନ ଶିକ୍ଷୟିତ୍ରୀ ଊର୍ମିଳା ଦେବୀ ପଞ୍ଚମ ଶ୍ରେଣୀର ଦାୟିତ୍ୱ ନେଇଛନ୍ତି । ପ୍ରଥମ ପିରିୟଡ଼ ମାତୃଭାଷା ଅଛି । ରଚନା ଶିକ୍ଷା ଦେବାକୁ ହେବ । ପିଲାମାନଙ୍କ ସହିତ ଆଲୋଚନା କରି, ସେମାନଙ୍କୁ କହିବାରେ ପୂରା ସ୍ୱାଧୀନତା ଦେଇ ହସଖୁସି ଭିତରେ ପାଠ ପଢ଼ାଇବା ତାଙ୍କର ମତ ।

ଊର୍ମିଳା ଦେବୀ ପଚାରିଲେ—ପିଲାମାନେ, ତୁମେମାନେ ବଡ଼ ହେଲେ କ'ଣ ହେବ ?

ସରଯୂ କହିଲା—ମୁଁ ନର୍ସ ହେବି । ମୋହିନୀ କହିଲା—ମୁଁ ହେବି ଇଞ୍ଜିନିୟର । ଧରିତ୍ରୀ କହିଲା—ମୁଁ ହେବି ଡାକ୍ତର । କାଦମ୍ବିନୀ କହିଲା—ମୁଁ ହେବି ଶିକ୍ଷୟିତ୍ରୀ । ଏମିତି ପ୍ରତ୍ୟେକ କିଛି ନା କିଛି ହେବି ବୋଲି ପ୍ରକାଶ କଲେ ।

ଊର୍ମିଳା ଦେବୀ ମୁରୁକି ହସି କହିଲେ—କାହିଁ କେହି ତ ଭଲ ମାଆ ହେବ ବୋଲି କହିଲ ନାହିଁ ? ମାଆ ହେବା କ'ଣ ଖରାପ ?

ମୋହିନୀ ପଚାରିଲା—ଆପଣ ତ କାହାରିକି ମାଆ ହୋଇ ନାହାନ୍ତି ? ଗୁରୁଜନ କଲେ ମାଆ ହେବାକୁ କ'ଣ ମନା ?

ବଡ଼ଗୁରୁମା'ଙ୍କ ମୁହଁ ଉପରେ ଗୋଟିଏ କଳା ବଉଦ ଡାଙ୍କି ହୋଇଗଲା ପରି ଲାଗିଲା । ଛୋଟ ଛୋଟ ପିଲା ହେଲେ ବି ସେମାନେ ମଣିଷର ମନ ଚିହ୍ନନ୍ତି, ମନ ଭିତର କଥା ମୁହଁ ଉପରୁ ଜାଣି ପାରନ୍ତି ।

ତେବେ ଊର୍ମିଳା ଦେବୀ ନିଜକୁ ସମ୍ଭାଳି ନେଇ କହିଲେ—ମୋର କେତେକ ଅସୁବିଧା ଥିଲା । କିନ୍ତୁ ତୁମ ଭିତରୁ ତ ଅନେକ ବାହାଘୋଳା ହୋଇ ସୁଖରେ ଘର ସଂସାର କରିପାରିବ ।

ପିଲାମାନେ ଠୋ ଠୋ ହୋଇ ହସି ଉଠିଲେ ।

× × × ×

ଊର୍ମିଳା ଦେଖା ଆଲୋଚନା କରିସାରି ପିଲାମାନଙ୍କୁ "ମୁଁ ବଡ଼ ହେଲେ କ'ଣ ହେବ" ଉପରେ ଗୋଟିଏ ଲେଖାଁ ରଚନା ଲେଖିବାକୁ କହିଲେ । ନିଜେ ପିଲାମାନଙ୍କର ହସ୍ତାକ୍ଷର ଖାତା ସଂଶୋଧନ କରିବାରେ ଲାଗିଲେ । ମାତ୍ର ତାଙ୍କ ମନରେ ଅତୀତର କେତେ କଥା ଗୋଟିଏ ପରେ ଗୋଟିଏ ଚଳଚ୍ଚିତ୍ରର ଚିତ୍ର ପରି ନାଚିଗଲା ।

ସେ ମାଟ୍ରିକ୍ ପରୀକ୍ଷା ଦେଇଥାନ୍ତି । ବୟସ ଜମା ପନ୍ଦର କି ଷୋଳ । ଦେଖିବାକୁ ସେ ସୁଶ୍ରୀ ଓ ସ୍ୱାସ୍ଥ୍ୟବତୀ । ବାପାଙ୍କର ପୁଣି ବଡ଼ ଝିଅ ସେ । ସେ କଲେଜରେ ପାଠ ପଢ଼ିବେ । କେତେ କଥା ଜାଣିବେ, କେତେ କଥା ଶିଖିବେ । ଜୀବନ ତାଙ୍କର ଉନ୍ନତ ହେବ । ସେ ହେବେ ଉଚ୍ଚଶିକ୍ଷିତା । ଭଲ ପାତ୍ର ଦେଖି ବାପା ତାଙ୍କୁ ବିଭା ଦେବେ । ଧନୀ, ମାନୀ ଓ ସୁନ୍ଦର ଯୁବକ । ଦାମ୍ପତ୍ୟ ଜୀବନ ତାଙ୍କର ସୁଖମୟ ହେବ । ସେ ହେବେ ଆଦର୍ଶ ଗୃହିଣୀ, ଆଦର୍ଶ ମାତା……

ଏଇପରି କେତେ ଭାବନା, କେତେ କଳ୍ପନା ! ମନ ଆକାଶରେ ଆଙ୍କି ଉଠେ ଶତ ଇନ୍ଦ୍ରଧନୁ । ସେ ଉଲ୍ଲସିତ ହୋଇ ପଡ଼ନ୍ତି ।

(ସୁରେଶ ତାଙ୍କ ଗ୍ରାମର ଉଚ୍ଚ ଶିକ୍ଷିତ ଓ ଟ୍ୱେଲ୍ ଧନୀ ଡେପୁଟୀ ମାଜିଷ୍ଟ୍ରେଟ୍‌ଙ୍କ ଏକମାତ୍ର ପୁଅ । ବି. ଏ. ପରୀକ୍ଷା ଦେଇ ଗ୍ରୀଷ୍ମ ଛୁଟିରେ ଗାଁକୁ ବୁଲି ଆସିଥାନ୍ତି । ପୂର୍ଣ୍ଣିମା ମେଳଣ, ରଜପର୍ବ ପ୍ରଭୃତିରେ ଗାଁର ତରୁଣ-ତରୁଣୀ, ଯୁବକଯୁବତୀମାନେ ଏକାଠି ହେଲେ । ନାଚତାମସା, ମଜଳିସ୍ ଭିତରେ ସମସ୍ତ କଟାଇଲେ । ଏଇ ମିଳାମିଶା ଭିତରେ ଊର୍ମିଳା ଓ ସୁରେଶଙ୍କର ସମ୍ବନ୍ଧ ନିବିଡ଼ ହେଲା । ପରସ୍ପରକୁ ଦୁହେଁ ଭଲ ପାଇବାରେ ଲାଗିଲେ ।

ପରେ ପରେ ଦୁହିଁଙ୍କର ପରୀକ୍ଷା ଫଳ ବାହାରିଲା । ଊର୍ମିଳା ଦ୍ୱିତୀୟ ଶ୍ରେଣୀରେ ପାସ୍ କରିଛନ୍ତି । ସୁରେଶ ବିଶ୍ୱବିଦ୍ୟାଳୟରେ ସର୍ବପ୍ରଥମ । ସୁରେଶ ଉଚ୍ଚ ଶିକ୍ଷା ପାଇଁ ପୁଣି ସହରକୁ ଫେରିଲେ । କିନ୍ତୁ

ସେ ଉର୍ମିଳାଙ୍କୁ ବିବାହ କରିବେ ବୋଲି କଥା ଦେଇଥାନ୍ତି । ଗାଁ ମୁଣ୍ଡ ଦେବମନ୍ଦିରରେ ଶପଥ ନେଇଥାନ୍ତି ।)

ଦୁର୍ଭାଗ୍ୟକୁ ଉର୍ମିଳାଙ୍କର ବାପା ହଠାତ୍ ହୃଦ୍‌ରୋଗରେ ଆକ୍ରାନ୍ତ ହୋଇ ମୃତ୍ୟୁମୁଖରେ ପଡ଼ିଲେ । ଉର୍ମିଳାଙ୍କ ଉପରେ ଘରର ସବୁ ଦାୟିତ୍ୱ ପଡ଼ିଲା । ମାଆ ତାଙ୍କର ଅତି ଦୁର୍ବଳା, ସର୍ବଦା ରୁଗ୍‌ଣା । ଉର୍ମିଳା କେବଳ ପିଲାମାନଙ୍କ ଭିତରେ ବଡ଼ ନୁହନ୍ତି, ଅନ୍ୟମାନେ ମଧ୍ୟ ଝିଅ ଆଉ ପ୍ରେଷ୍ଠ ପ୍ରେଷ୍ଠ । ତଳକୁ ତଳ ତିନୋଟି । ଉର୍ମିଳାଙ୍କ ବାପା ଗାଁ ପାଖ ପୋଷ୍ଟ ଅଫିସରେ ପୋଷ୍ଟ ମାଷ୍ଟର ଥିଲେ । ଜମିବାଡ଼ି ବେଶି ନ ଥିଲେହେଁ ଦରମା ଗଣ୍ଡିକରେ ସେମାନେ ଖୁବ୍ ସୁଖରେ ଚଳିଯା'ନ୍ତି ।

ବାପାଙ୍କ ମୃତ୍ୟୁ ପରେ ପନ୍ଦର ଦିନ ଯାଇ ନାହିଁ ବ୍ୟାଙ୍କରୁ ଚିଠି ପାଇଲେ ସେ ତାଙ୍କର ବାପା ନେଇଥିବା ଦୁଇ ହଜାର ଟଙ୍କାର ଋଣ ମାସକ ଭିତରେ ପରିଶୋଧ ନ କଲେ ତାଙ୍କ ଘର ଆସବାବପତ୍ର ନିଲାମ ହେବ । ସେ ତେଣୁ ନିଜେ ବ୍ୟାଙ୍କକୁ ଯାଇ ସଭାପତିଙ୍କୁ ସାକ୍ଷାତ୍ କଲେ । ସେ ଜାଣିଲେ ଯେ ପାଞ୍ଚ ବର୍ଷ ତଳେ ବାପା ଘର ଦୁଇ ବଖରା ତିଆରି କରିବାକୁ ଦେଢ଼ ହଜାର ଟଙ୍କା ଋଣ ନେଇଥିଲେ । ତା ଉପରେ ସୁଧ ବଢ଼ି ବଢ଼ି ସେ ଏବେ ଦୁଇ ହଜାର ଟଙ୍କା ହେଲାଣି ।

ଉର୍ମିଳା କହିଲେ—ଦେଖନ୍ତୁ, ଘରେ ତ ଟଙ୍କା ପଇସା ନାହିଁ । ଯାହା ଥିଲା ବାପାଙ୍କ ଶୁଦ୍ଧିକ୍ରିୟାରେ ଶେଷ ହେଲା । ଏବେ ମୋତେ ବର୍ଷେ ସମୟ ଦିଅନ୍ତୁ । ମୁଁ ଚାକିରି କରି ମାସକୁ ମାସ କିସ୍ତିରେ ସବୁ ଶୁଝି ଦେବି ।

ବ୍ୟାଙ୍କର ସଭାପତି ଉର୍ମିଳାଙ୍କ ବାପାଙ୍କୁ ଭଲକରି ଜାଣନ୍ତି । ସେ ଏହି ଅସୁବିଧାରେ ଦୁଃଖ ପ୍ରକାଶ କଲେ ଆଉ ବର୍ଷେ ସମୟ ଦେବାକୁ ରାଜି ହେଲେ, ମାତ୍ର ପଚାରିଲେ ତୁମେ କି ଚାକିରି କରିବ ?

ଉର୍ମିଳା ଉତ୍ତର ଦେଲେ—ମୁଁ ଶିକ୍ଷୟିତ୍ରୀ ହେବି ।

ଶିକ୍ଷୟିତ୍ରୀ ଚାକିରି ପାଇବା ତ ସହଜ କଥା ନୁହେଁ, ପୁଣି ତୁମର ବୟସ ଏତେ ଅଳ୍ପ, ବ୍ୟାଙ୍କ ସଭାପତି କହିଲେ ।

ଊର୍ମିଳା ମୁରୁକି ହସି କହିଲେ—ମୁଁ ତ ଆଉ ପିଲା ନୁହେଁ । ମାଟ୍ରିକ୍ ପାସ୍ କରିଛି ।

ବ୍ୟାଙ୍କ ସଭାପତି ହସି ହସି ଉତ୍ତର ଦେଲେ—ଖାଲି ମାଟ୍ରିକ୍ ପାସ୍ କଲେ ତ ମାଷ୍ଟର ହୋଇଯା'ନ୍ତି ନାହିଁ । ଅଭିଜ୍ଞତା ଦରକାର । ପୁଣି ତୁମେ ଝିଅ ପିଲା !

ଊର୍ମିଳା ଦୃଢ଼ ସ୍ୱରରେ କହିଲେ—ପ୍ରଥମରୁ ତ କାହାର ଅଭିଜ୍ଞତା ନ ଥାଏ । ଆସ୍ତେ ଆସ୍ତେ ଅଭିଜ୍ଞତା ଆସିଯିବ । ଝିଅ ପିଲା କ'ଣ ଶିକ୍ଷୟିତ୍ରୀ ହୋଇପାରିବେ ନାହିଁ ?

ବ୍ୟାଙ୍କ ସଭାପତି କହିଲେ—ହଉ, ତୁମେ ଚାକିରି କରିବାକୁ ଯଦି ଠିକ୍ କରିଛ, ମୁଁ ସେଥିରେ ବାଧା ଦେବି ନାହିଁ । ବରଂ ଜିଲ୍ଲା ଶିକ୍ଷକ ନିର୍ବାଚନ ବୋର୍ଡର ଚେୟାରମ୍ୟାନ୍ ମୋର ସାଙ୍ଗ ଅଛନ୍ତି । ତାଙ୍କୁ ମୁଁ ଚିଠି ଦେଉଛି । ତୁମେ ଗୋଟିଏ ଦରଖାସ୍ତ ପଠାଇ ଦିଅ ।

ଊର୍ମିଳା କୃତଜ୍ଞତା ପ୍ରକାଶ କଲେ ଏବଂ ଦରଖାସ୍ତ ଲେଖି ପଠାଇ ଦେବେ ବୋଲି କହି ବିଦାୟ ନେଲେ ।

ଯେଉଁଦିନ ସେ ଚାକିରି ପାଇଁ ଦରଖାସ୍ତ କଲେ, ସେହିଦିନ ସେ ସୁରେଶଙ୍କୁ ସବୁ ଅସୁବିଧା ଲେଖି ତାଙ୍କର ଚାକିରି କରିବା କଥା ଜଣାଇ ଦେଲେ ।

ମାସେ ଗଲା । ସୁରେଶ ଊର୍ମିଳାଙ୍କ ଚିଠି ପାଇ ବଡ଼ ବ୍ୟସ୍ତ । କିନ୍ତୁ ଊର୍ମିଳାଙ୍କ ସହିତ ବିବାହ କରିବାକୁ ତାଙ୍କ ବାପାଙ୍କର ପୂରା ଅନିଚ୍ଛା । କେତେ ସୁନ୍ଦରୀ, ଉଚ୍ଚଶିକ୍ଷିତା ପାତ୍ରୀ ମିଳିବେ । କେତେ ଆଇ. ଏ. ଏସ୍., ଆଇ. ପି. ଏସ୍. ଆଉ ସିଭିଲ ସର୍ଜନ ତାଙ୍କ ପୁଅକୁ ଜ୍ୱାଇଁ କରିବାକୁ ଆସିବେ । ସେ ଏପରି ଦରିଦ୍ର ପରିବାରର ଅଳ୍ପଶିକ୍ଷିତା ଝିଅଟିକୁ ବୋହୂ କରିବେ କାହିଁକି ?

ଅନେକ ସମୟରେ ସୁରେଶ କୌଣସି ବାହାନାରେ ଗାଁକୁ ଆସି ଊର୍ମିଳାଙ୍କୁ ଭେଟିବାକୁ ଇଚ୍ଛା କଲେ । ମାତ୍ର ସୁବିଧା ହେଲା ନାହିଁ । ଥରେ ବାପା ଟୁର୍‌ରେ ଯିବାରୁ ସେ ଗାଁକୁ ଗଲେ । ଊର୍ମିଳାଙ୍କୁ ଚାକିରି ନ କରି ଅପେକ୍ଷା କରିବାକୁ କହିଲେ—ଦେଖ ଊର୍ମି, ବାପା ତ ବିବାହ କରିବାକୁ

ପଷ୍ଟଉଛନ୍ତି । ସେଥିରେ ତୁମେ ସ୍ବୀକାର କଲେ ମୋର ସବୁ ଆଶା ବୁଡ଼ିଯିବ ।

ଊର୍ମିଳା କହିଲେ—ବାପା ତୁମ ସହିତ ମୋର ବିବାହକୁ କେବେ ସମର୍ଥନ କରୁନାହାନ୍ତି । ମୋର ସେ ଭାଗ୍ୟ ନାହିଁ । ତୁମେ କେଉଁ ଧନୀ ଘରର ଦୁଲ୍ଲଣୀକୁ ବିବାହ କରିବ । କେତେ ଯୌତୁକ ପାଇବ । ବିଳାସ-ବ୍ୟସନରେ ତୁମ ଘର ପୂରି ଉଠିବ । ତୁମେ କାହିଁକି ଅଯଥାରେ ମୋତେ ସ୍ବୀକାର କରିବାକୁ ମନା କରୁଛ ?

"ତୁମେ ଅପେକ୍ଷା କର ଊର୍ମି ! ସମୟ ବଦଳୁଛି । ବାପାଙ୍କ ମନ ବଦଳି ଯିବ । ତୁମକୁ ପାଇ ମୁଁ ପ୍ରକୃତରେ ସୁଖୀ ହୋଇପାରିବି । ଧନୀ ଘରର ଦୁଲ୍ଲଣୀ ମୋର ଲୋଡ଼ା ନାହିଁ କି ବିଳାସ ଆଡ଼ମ୍ବର ମୋର ଦରକାର ନାହିଁ ।"—ସୁରେଶ ବୁଝାଇଲେ ।

"ଦେଖ ସୁରି, ବାପାଙ୍କର ଋଣ ପରିଶୋଧ କରିବାର ଅନ୍ୟ ଉପାୟ ମୋର ନାହିଁ । ମୁଁ ବର୍ଷେ ସମୟ ମାଗିଛି । ସେ ଦୟାକରି ତାହା ଦେଇଛନ୍ତି । ନଚେତ୍ ଘର······"

ଏହି ସମୟରେ ଡାକବାଲା "ଚିଠି ଚିଠି" ଡାକିଲା । ଊର୍ମିଳା ତାଙ୍କଠାରୁ ଚିଠି ଆଣି ଖୋଲିଲେ । ଏହା ନରେନ୍ଦ୍ରପୁର ବାଳିକା ନି. ପ୍ରା. ସ୍କୁଲରେ ଶିକ୍ଷକତା କରିବା ପାଇଁ ନିଯୁକ୍ତିପତ୍ର ଜିଲ୍ଲା ଶିକ୍ଷାଧିକାରୀଙ୍କଠାରୁ ଆସିଛି । ଊର୍ମିଳା ସୁରେଶଙ୍କ ହାତକୁ ଏହା ବଢ଼ାଇ ଦେଲେ । ସୁରେଶ ଏହାକୁ ପଢ଼ି ଶେଷ କରିବାକୁ ବାହାରିଲା ବେଳେ ଊର୍ମିଳା ତାକୁ ଛଡ଼ାଇ ନେଇଥିଲେ ।

ଊର୍ମିଳା ଦୃଢ଼ ସ୍ବରରେ କହିଲେ—"ଦେଖ ସୁରେଶ, ତୁମେ ମୋତେ ଭଲ ପାଉଛ, ଏହା ମୋର ଭାଗ୍ୟର କଥା । ଏହି ଭଲ ପାଇବା ହିଁ ମୋର ଗୌରବ, ସବୁଦିନ ପାଇଁ ମଧୁର ସ୍ମୃତି ହୋଇ ରହିବ । ତୁମେ ଆକାଶର ଚନ୍ଦ୍ର ଆଉ ମୁଁ ଏଇ ମାଟିର ଘାସ କଇଁ । ଆମର ସମ୍ପର୍କ କେବଳ ସ୍ବପ୍ନରେ ହିଁ ରହିଯିବ । କାରଣ ବିବାହ ଆଦୌ ସମ୍ଭବ ହେବ ନାହିଁ । ତୁମର ବାପା ତାହା କରାଇ ଦେବେ ନାହିଁ ।"

ସୁରେଶ—ଊର୍ମି, ତୁମେ ଧୈର୍ଯ୍ୟ ଧର । ଅପେକ୍ଷା କର । ମୁଁ ନିଶ୍ଚୟ·········

ଉର୍ମିଳା—ବିବାହ କରିବ ତ ! ହେଲା, ମୋ ଜୀବନ ଧନ୍ୟ ହେବ । ମାତୃ ଋଣ ଶୁଝିବା ପାଇଁ ମୋତେ ନିଶ୍ଚୟ ସ୍ବୀକାର କରିବାକୁ ହେବ । ବର୍ଷକ ପରେ ଯଦି ବାପା ରାଜି ହୁଅନ୍ତି, ଆମର ବିବାହ ହେବ । ତାହା ହେବ ମୋର ସବୁଠୁଁ ସୁଖର ଦିନ······

ସୁରେଶ ଆଉ ବୁଝାଇବାକୁ ଚେଷ୍ଟା ନ କରି କହିଲେ—ହଉ, ତୁମେ ଯାହା ଭଲ ବିଚାରୁଛ କର । ମୁଁ ଗଲିଲି ।

ଏହା କହି ସୁରେଶ ଚାଲି ଯାଇଥିଲେ । ଉର୍ମିଳା ତାଙ୍କୁ ଆଉ ବନାଇ ରଖି ନ ଥିଲେ । ସତକୁ ସତ ସୁରେଶଙ୍କର ବାପା ତ ଉର୍ମିଳାଙ୍କ ସହିତ ବିବାହ କରିବାକୁ କୌଣସିମତେ ରାଜି ହୋଇ ନ ଥିଲେ । ସୁରେଶ ଚାରି ପାଞ୍ଚ ମାସ ପରେ ଯୋଗାଣ ବିଭାଗର ସେକ୍ରେଟେରୀଙ୍କ ଝିଅକୁ ବିବାହ କରିଥିଲେ ।

ଉର୍ମିଳା ଏହା ଶୁଣି ଆଶ୍ୱସ୍ତ ହୋଇଥିଲେ । କାରଣ ସେ ଯାହା ଆଶଙ୍କା କରିଥିଲେ, ସେଇଆ ହେଲା । ବାମନ ହୋଇ ସେ ଚନ୍ଦ୍ରକୁ କାହିଁକି ବା ହାତ ବଢ଼ାଇବେ ? ସେ ସୁରେଶ କଥାରେ ପଡ଼ି ସ୍ବୀକାର ଯାଇ ନ ଥିଲେ; ଏହା ବରଂ ଭାଗ୍ୟର କଥା । × ×

ଉର୍ମିଳା ଆଜକୁ ବାଇଶ ବର୍ଷ ତଳେ ପ୍ରଥମ ଦିନ ନରେନ୍ଦ୍ରପୁର ସ୍କୁଲରେ ଯୋଗ ଦେବାକୁ ଯା'ନ୍ତି । ଗୋଟିଏ ବଖରା ଘର । ସେଇଆକୁ ବିଭାଗ କରି ଦୁଇଜଣ ପାଠ ପଢ଼ାଇଲେ । ମାଟ୍ରିକ୍ ପାସ୍ କରିଥିବାରୁ ସେ ହେଲେ ସେଇ ସ୍କୁଲର ପ୍ରଧାନ ଶିକ୍ଷୟିତ୍ରୀ । ଆଉଜଣେ ସି. ଇ. ପାସ୍ କରି ସେଠାରେ ଶିକ୍ଷକତା କରୁଥିଲେ ତାଙ୍କ ଆଗରୁ । ଦୁହେଁ ମନ ମିଳାଇ ସ୍କୁଲଟିକୁ ସୁନ୍ଦର କରି ଗଢ଼ିଲେ । ଯେଉଁ ବଗିଚା ଘାସବଣ ହୋଇ ପଡ଼ିଥିଲା, ତାହା ନାନା ଫୁଲ ଫଳ ଗଛରେ ହସି ଉଠିଲା । ପିଲାମାନଙ୍କ ପାଇଁ ଖେଳପଡ଼ିଆଟେ ପ୍ରସ୍ତୁତ ହେଲା । ସ୍ନେହ ସ୍ନେହ ପିଲାଙ୍କୁ ହସଖୁସି ଭିତରେ ପାଠ ପଢ଼ାଇଲେ । ତେଣୁ ଆଗରୁ ଭରି ମାଡ଼ଗାଳି ହେଉଥିବାରୁ ସେମାନେ ସ୍କୁଲକୁ ଆସିବାକୁ ଭୟ କରୁଥିଲେ । ଏବେ ଘରେ ରହିବାକୁ ସେମାନଙ୍କର ମନ ହେଉନାହିଁ । ସେମାନେ କିପରି ସକାଳୁ ଉଠି ନିଜ ନିଜର ନିତ୍ୟକର୍ମ ସାରି ସ୍କୁଲକୁ ଆସିବେ, ସେଥିପାଇଁ ବ୍ୟସ୍ତ ହୋଇ ପଡ଼ୁଛନ୍ତି ।

ଦିନକୁ ଦିନ ସ୍କୁଲରେ ପିଲାଙ୍କ ସଂଖ୍ୟା ବଢ଼ିଲା । ନୂଆ ଶିକ୍ଷୟିତ୍ରୀ ଆସିଲେ । ପ୍ରଥମେ ତାହା ନିମ୍ନ ପ୍ରାଥମିକ ସ୍କୁଲଟିଏ ଥିଲା । ଏବେ ତାହା ଉଚ୍ଚ ପ୍ରାଥମିକ ସ୍କୁଲ । ସାତ ଜଣ ଶିକ୍ଷକ ଶିକ୍ଷୟିତ୍ରୀ, ନୂଆ ନୂଆ ଘରଦ୍ୱାର, ବାଡ଼ବଗିଚା, ଉପକରଣ ଆଉ ଆସବାବପତ୍ରରେ ସ୍କୁଲ ପୂର୍ଣ୍ଣାଙ୍ଗ ହୋଇ ଉଠିଲା । ପ୍ରତ୍ୟେକ ପିଲାଙ୍କର ଭଲ ମନ୍ଦ, ସୁବିଧା ଅସୁବିଧା ବୁଝିବା ପାଇଁ ଊର୍ମିଳା ଦେବୀ ଚେଷ୍ଟା କରନ୍ତି । କେଉଁ ପିଲା ଗୀତରେ ଭଲ, କେଉଁ ପିଲା ଖେଳରେ ଧୁରନ୍ଧର, କିଏ ବଗିଚା କାମରେ ନିପୁଣ, କିଏ ଅଙ୍କରେ ସବଳ, କିଏ ସାହିତ୍ୟରେ ସୁଦକ୍ଷ, ସବୁ ସେ ଜାଣି ତାକୁ ସେଇ ଦିଗରେ ଅଧିକ ଉତ୍ସାହ ଓ ପ୍ରେରଣା ଦେଇ ଆଗେଇ ନିଅନ୍ତି । କାହାକୁ ଅଭାବ ଅସୁବିଧାରେ ସାହା ହୁଅନ୍ତି ତ ଆଉ କାହାକୁ ବିପଦ ଆପଦରେ ଆଶ୍ରା କରନ୍ତି । ଛାତ୍ରୀମାନେ ବଡ଼ ହୋଇ ଯେତେବେଳେ ଜୀବନ ପଥରେ ନାନା ସମସ୍ୟାର ସମ୍ମୁଖୀନ ହୁଅନ୍ତି, ସେତେବେଳେ ମଧ୍ୟ ଊର୍ମିଳା ଦେବୀଙ୍କ ପାଖକୁ ଆସି ଉପଦେଶ ନିଅନ୍ତି । ସେମାନଙ୍କ ପିତାମାତା ମଧ୍ୟ ବିଭିନ୍ନ ବିଷୟରେ ତାଙ୍କ ସହିତ ପରାମର୍ଶ କରନ୍ତି ।

ଦିନକୁ ଦିନ ତାଙ୍କର ଲୋକପ୍ରିୟତା ବଢ଼ିଲା । ସବୁରି ମୁହଁରେ ଊର୍ମିଳା ଦେବୀଙ୍କ ଜୟଗାନ । ସବୁରି ତୁଣ୍ଡରେ ସ୍କୁଲର ପ୍ରଶଂସା । ତାଙ୍କର ବଦଳି ହେଲେ ଗାଁ ଗୋଟିକର ଲୋକ ଯାଇ କର୍ମକର୍ତ୍ତାଙ୍କ ପାଖେ ଆପତ୍ତି ଗୁହାରି କରନ୍ତି । ବଦଳି ବନ୍ଦ ହୁଏ ।

× × × ×

ଏଥି ଭିତରେ ଊର୍ମିଳାଙ୍କ ମାଆ ସ୍ୱର୍ଗଗାମିନୀ ହେଲେଣି । ବାପାଙ୍କର କରଜ ସବୁ ଶୁଝି ଗଲାଣି । ଭଉଣୀମାନେ ମଧ୍ୟ ପାଠଶାଠ ପଢ଼ି ବାହାଚୋଳା ହୋଇ ନିଜ ନିଜର ଘରସଂସାର କଲେଣି । ସେ ବର୍ତ୍ତମାନ ଘରେ ଏକାକିନୀ । ସବୁ ବାଟୋଇଙ୍କୁ ପାରି କରିସାରି ମଝି ନଈରେ ଏକା ସେ ବୁଢ଼ା ନାଉରୀ । କ୍ରମେ ଜୀବନର ଅପରାହ୍ଣ ନଇଁ ଆସୁଛି । ଯୌବନର ଶିଖା ହଳହଳ ଯାଉଛି । ଦେହସାରା ଖାଲି ବୟସର ଗଭୀର ଦାଗ ଆଉ ମନସାରା ସ୍ମୃତିର ଲମ୍ବା ଲମ୍ବା ଛାଇ ।

ଦିନେ ହଠାତ୍ ଊର୍ମିଳା ଦେବୀ ରୋଗାକ୍ରାନ୍ତ ହେଲେ । ତାଙ୍କୁ ଆମ୍ବୁଲାନ୍ସରେ ଡାକ୍ତରଖାନାକୁ ନିଆଗଲା । ସେଠାରେ ତାଙ୍କର ଜଣେ

ଛାତ୍ରୀ ସୁଚେତା ଡାକ୍ତରଣୀ । ସେ ପରୀକ୍ଷା କରି ଦେଖିଲେ ଯେ ଗୋଟିଏ କଠିନ ଅପରେସନ୍ ବ୍ୟତୀତ ତାଙ୍କର ପ୍ରିୟ ଗୁରୁମା ସୁସ୍ଥ ହେବା ଅସମ୍ଭବ । ସେଠାର ନର୍ସମାନଙ୍କ ଭିତରୁ ଜଣେ ଦୁଇଜଣ ଊର୍ମିଳାଙ୍କର ଛାତ୍ରୀ ମଧ୍ୟ । ସେମାନେ ତାଙ୍କର ସେବା ଶୁଶ୍ରୂଷାରେ ମନପ୍ରାଣ ଢାଳିଦେଲେ ।

ଅପରେସନ୍ ପୂର୍ବରୁ ଊର୍ମିଳା ପଚାରିଲେ—ସୁଚି ! କ'ଣ ମୁଁ ଶୁଣିଛି, ଅପରେସନ୍ ବଡ଼ କଠିନ ହେବ । ସଫଳ ହେବ ତ ?

ସୁଚେତା ଉତ୍ତର ଦେଲେ—ଆଶା, ନିଶ୍ଚୟ ସଫଳ ହେବ ।

ଊର୍ମିଳା ମୁରୁକି ହସି କହିଲେ—ହଉ, ମୁଁ ଜାଣିଛି ତୋର ହାତ ଖୁବ ଭଲ । ଦେଖାଯାଉ ତୁ କ'ଣ କରୁଛୁ !

ଯେଉଁଦିନ ଅପରେସନ୍ ହେଲା ସେଦିନ ଡାକ୍ତରଖାନାରେ ଶହଶହ ଲୋକଙ୍କର ଭିଡ଼ । ଛାତ୍ରୀମାନଙ୍କଠାରୁ ଆରମ୍ଭ କରି ସେମାନଙ୍କ ପିତାମାତା, ଭାଇଭଉଣୀଙ୍କ ପର୍ଯ୍ୟନ୍ତ ସମସ୍ତେ ଆଗ୍ରହରେ ରୁହିଁ ରହିଛନ୍ତି । ସବୁରି ମନରେ ସନ୍ଦେହ, ଭୟ, ଆଶା ଆଉ ଆଶଙ୍କା ! ଅପରେସନ୍ ବହୁ ସମୟ ଲାଗିବାରୁ ଏହି ଦ୍ୱନ୍ଦ୍ୱ ଆହୁରି ବଢ଼ିବାରେ ଲାଗିଲା ।

ଶେଷରେ ଡାକ୍ତରଣୀ, ନର୍ସ କ୍ଳାନ୍ତଶ୍ରାନ୍ତ ହୋଇ ଅପରେସନ୍ ଘରୁ ବାହାରିଲେ । ସବୁରି ମୁହଁ ଶୁଖି ଯାଇଛି । ସେମାନଙ୍କୁ ଦେଖି ଦର୍ଶକମାନଙ୍କ ଭିତରୁ କେତେକ କାନ୍ଦି ପକାଇଲେ । କେତେକ ବିକଳ ହୋଇ ପଚାରି ପକାଇଲେ ।

ଡାକ୍ତରଣୀ ସୁଚେତା ଦେବୀ ଉତ୍ତର ଦେଲେ—ଅପେକ୍ଷା କର । ସେ ତ ଏବେ ବେହୋସ ହୋଇ ପଡ଼ିଛନ୍ତି । ଆଗ ଚେତା ଆସୁ । ତାପରେ ଦେଖିବା ।

ଘଣ୍ଟେ ପାଞ୍ଚ ଘଣ୍ଟା ପରେ ଊର୍ମିଳା ଦେବୀଙ୍କର ଚେତା ଆସିଲା । ସେ କହିଲେ—କ'ଣ ସୁଚେତା, ମୁଁ ବଞ୍ଚିଗଲି ? ମୋତେ ଚେତା କରାଇଲୁ । ବାହାରେ ଏତେ ପାଟିଗୋଳ ଶୁଭୁଛି କାହିଁକି ?

ନର୍ସ ଉତ୍ତର ଦେଲେ—ଆପଣଙ୍କର ଛାତ୍ରମାନେ ସବୁ ଜମା ହୋଇଛନ୍ତି । ସେମାନଙ୍କର ବାପା ମାଆ, ଭାଇ ଭଉଣୀମାନେ ମଧ୍ୟ ଆସିଛନ୍ତି ।

ଉର୍ମିଳା ଦେବୀ କହିଲେ—କାହିଁକି ସେମାନେ ଏତେ ସମୟ ନଷ୍ଟ କରି ଆସିଛନ୍ତି ? ସ୍କୁଲ୍ କାହିଁକି ବନ୍ଦ କରିଛନ୍ତି ? ଏବେ ପରା ପରୀକ୍ଷା ହେବ ?

ସମସ୍ତେ ଜାଣନ୍ତି ଉର୍ମିଳା ଦେବୀ କିପରି ସମୟାନୁବର୍ତ୍ତୀନୀ ! କର୍ତ୍ତବ୍ୟନିଷ୍ଠା ତାଙ୍କ ଜୀବନର ବ୍ରତ । ଡାକ୍ତରାଣୀ ସୁଚେତା ଦେବୀ କହିଲେ—ଆପଣ ତ ପାଠ ପଢ଼ାଇଛନ୍ତି, ସେମାନେ ପରୀକ୍ଷା ଦେବେ । ଆପଣଙ୍କର କିନ୍ତୁ ଏହି ପରୀକ୍ଷା ଯେ ଅତି କଠିନ । ତେଣୁ ସମସ୍ତେ ଆସି ପହଞ୍ଚିଛନ୍ତି । ପିଲାଠାରୁ ବଡ଼ଯାଏ ଆଜି ସମସ୍ତେ ଏତେ ବ୍ୟାକୁଳ !

ନର୍ସ ଦୁଆର ମେଲିଦେଲେ । ଉର୍ମିଳା ଦେବୀ ବାହାରକୁ ଚାହିଁଲେ । ଡାକ୍ତରଖାନା ହତା ସାରା ଲୋକସମୁଦ୍ର । ସମସ୍ତେ ହାତ ଟେକି ତାଙ୍କ ପ୍ରତି ସମ୍ମାନ ଜଣାଉଛନ୍ତି । ଭଗବାନଙ୍କ ଆଶିଷ ମାଗୁଛନ୍ତି । ଅନେକଙ୍କ ଆଖିରେ ଆନନ୍ଦର ଲୁହ । ମୁହଁରେ ହସର ଫୁଆରା ।



ଉର୍ମିଳା ଦେବୀ ବାହାରକୁ ଚାହିଁଲେ । ତାଙ୍କ ଶୁଖିଲା ମୁହଁରେ ହସ ଖେଳିଗଲା । ଆଖିରୁ ଦୁଇଧାର ଆନନ୍ଦାଶ୍ରୁ ଝରିଗଲା । ସେ କହି ଉଠିଲେ—ଏହାହିଁ ମୋର ଗୌରବ । ଏଇଥିରେ ହିଁ ମୋର ଆନନ୍ଦ ! ମୁଁ କ'ଣ ସତେ ମାଆ ନୁହେଁ ? ତୁମ୍ଭେମାନେ ତ ସମସ୍ତେ ମୋର ପିଲା । ପ୍ରକୃତରେ ମୁଁ କେତେ ସୁଖୀ !

ସମସ୍ତଙ୍କ ପାଟିରୁ ବାହାରି ଆସିଲା—ହଁ, ତୁମେ ସବୁରି ମାଆ ।

# ଅନ୍ଧକାରର ସୀମା

## ଶ୍ରୀ ରମେଶ ଚନ୍ଦ୍ର ଧଳ

(ଛାତରେ ସିଲିଂ ଫ୍ୟାନ୍ ଘୂରି ଚାଲିଛି । ସତେ ଅବା ଫ୍ୟାନ୍‌ର ବ୍ଲେଡ୍ ସବୁ ମାନସର ଚିନ୍ତାରାଜ୍ୟରେ ଅସ୍ୱନକ ଭଠା ସୃଷ୍ଟି କରୁଛନ୍ତି । ତା ପାଇଁ ଯେଉଁ ଦିଗ୍‌ବଳୟ ଏତେ ସ୍ପଷ୍ଟ, ଲୋଭନୀୟ ମନେ ହେଉଥିଲା ତାହା ସତେ ଯେପରି ମେଘାଚ୍ଛନ୍ନ ହୋଇ ଉଠିଛି । ନିଜକୁ ସକ୍ରିୟ କରିବା ନିମନ୍ତେ ଆଉ ଖଣ୍ଡିଏ ସିଗାରେଟରେ ସେ ନିଆଁ ଧରାଇଲା । ତଥାପି କୌଣସି ମାନସିକ ପରିବର୍ତ୍ତନ ନାହିଁ । ଉଦାସ ନୟନରେ ବାହାରକୁ ଚାହିଁ ମନେ ମନେ ସେ ଭାବୁଛି ବନ୍ଧୁମାନଙ୍କ ନିଷ୍ପତ୍ତିରେ ସେ ଏକମତ ହେବାକୁ ବାଧ୍ୟ । ଅନ୍ୟ ଉପାୟ ନାହିଁ ।

ମାନସ ବିଶ୍ୱବିଦ୍ୟାଳୟର କୃତୀ ଛାତ୍ର । ଅନେକ ସ୍ୱପ୍ନ ମନରେ । ପ୍ରତିଟି ସ୍ୱପ୍ନକୁ ବାସ୍ତବରେ ରୂପ ଦେବା ନିମନ୍ତେ ନିଜ ଉପରେ ଅସମ୍ଭବ ଆତ୍ମବିଶ୍ୱାସ । କିନ୍ତୁ ତାର ସେ ରାସ୍ତାରେ ଅନେକ ପ୍ରତିବନ୍ଧକ । ଦୀର୍ଘ ସମୟ ଧରି ନୀରବ ରହିବା ପରେ ସେ ଗୋଟିଏ ମାତ୍ର ପ୍ରଶ୍ନ କରିଥିଲା—‘‘ଦେଖ ଭାଇମାନେ ! ତମ ଆହ୍ୱାନରେ ପରୀକ୍ଷା ନ ଦେଇ ହଲ୍‌ରୁ ବାହାରି ଆସିବ ସତ, କିନ୍ତୁ ରଶ୍ମି ! ସେ ତ ଆସିବ ନାହିଁ । ରଶ୍ମି, ଇଂରେଜୀ ଅଧ୍ୟାପକଙ୍କ କନ୍ୟା ଏବଂ ବିଶ୍ୱବିଦ୍ୟାଳୟର କୃତୀ ଛାତ୍ରୀ ମଧ୍ୟ । ସେ ତ ପରୀକ୍ଷାରେ ନିଶ୍ଚୟ ଷ୍ଟାଣ୍ଡ କରିବ । ଅନ୍ୟମାନେ ବି ଅଛନ୍ତି, ସୁରେଶ, ଦିନେଶ, ବିରେନ୍ । ସେମାନେ ଭେରି ସ୍କଲର୍ । ସେମାନଙ୍କ ମତାମତ ନେଇଛ ତ ? ପୁଣି ପାଠ ପଢ଼ିବା ମୋର ବିଳାସ ନୁହେଁ । ଜୀବନଯାତ୍ରା ନିମନ୍ତେ ଏହା ମୋର ଏକାନ୍ତ ପ୍ରୟୋଜନ ।’’

ସୌମେନ୍ଦ୍ର କହିଲା, ‘‘ମାନସ, ତୁ ବ୍ୟସ୍ତ ହ’ନା । ଆମେ ସେ କଥା ବୁଝିବୁ । ମାନସ ଦାସ ଯେଉଁଠାରେ ପରୀକ୍ଷା ହଲ୍ ଛାଡ଼ି ଚାଲି ଆସିବ ବୋଲି ରାଜି, ସେଠାରେ··· । କେହି, କେହି ନୁହେଁ । ଆମେ ସମସ୍ତଙ୍କୁ ଅଟକାଇ ନେଇ ପାରିବୁ । ରଶ୍ମି ବାୟେଁ ହାତ୍ କା ଖେଲ୍ । ସେ ଯଦି

ଆମ କଥା ଶୁଣି ପରୀକ୍ଷା ହଲ୍ ଛାଡ଼ି ଚାଲି ନ ଆସିଛି ; ତା ନିଳଦୁପଟ୍ଟା, ତାର ବ୍ଲାଉଜ ଯଦି ମୁଁ ଛଡ଼ାଇ ନ ଆଣିଛି ତେବେ କହିବୁ । ବାକି ନରେଶ ଫଡ଼୍‌ଫଡ଼୍ ହେଉଛି । ଗୋଟାଏ ଗୁପଡ଼ା ଦେବ ଯେ···।" ମାନସ କୌଣସି ମନ୍ତବ୍ୟ ନ କରି ନିର୍ବାକ୍‌ରେ ସବୁ ଶୁଣି ଚାଲିଥାଏ ।

ମାନସର ନୀରବତା ଦେଖି ସୌମେନ୍ଦ୍ର କହିଲା, "କ'ଣ ଭାବୁଛୁ··· ଭୟ କରୁଛୁ, ସେମାନେ କେସ୍ କରିବେ ? ପୋଲିସ୍‌ର ସାହାଯ୍ୟ ନେବେ ? ତୋତେ ନିର୍ଭର ପ୍ରତିଶ୍ରୁତି ଦେଉଛି···କିଛି ହେବ ନାହିଁ । ପୁଲିସବାଲାଙ୍କର ମଧ୍ୟ ପିଲା ଅଛନ୍ତି । ଯେଉଁଠାରେ ଲେକ୍‌ଚରର ନାହାନ୍ତି, ଲାଇବ୍ରେରୀ ନାହିଁ, ବିଜ୍ଞାନାଗାର ଅଛି କିନ୍ତୁ ବିଜ୍ଞାନୋପକରଣ ନାହିଁ, ସେଠାରେ ଫେୟାର୍ ଏକ୍‌ଜାମିନେସନ୍ ପ୍ରଶ୍ନ ଉଠୁଛି କାହିଁକି ? ସବୁ କଲେଜରେ ଯଦି ଛାତ୍ରମାନେ କପି କରି ପାସ୍ କରିପାରିଲେ···ତେବେ ଆମେ ଏଠାରେ···। ଯଦି ବିଶେଷ କିଛି ହୁଏ ତେବେ ବେହେରାବାବୁ ଅଛନ୍ତି ।"

"ସେ କିଏ ?" ମାନସ ପ୍ରଶ୍ନ କଲା ।

ସେ କିଏ ! ସୌମେନ୍ଦ୍ର ହସିଲା, ଆଉ କହିଲା, "ମାନସ, ତୁ ସତରେ ଗୋଟାଏ ଇଣ୍ଟେଲେକ୍‌ଚୁଆଲ୍ ଫୁଲ୍ । ତୁ ଜାଣିନାହୁଁ, ସେ ଆମର ଏମ୍. ଏଲ୍. ଏ. : ଏକ୍ସ ଏମ୍. ଏଲ୍. ଏ. ମାନେ ହେଲେ ଏ ଯୁଗର 'ହ୍ୱାଟ୍ ନଟ୍' । ତୁ ଜାଣୁ ବେହେରାବାବୁଙ୍କ ସରକାରୀ କଳ ଉପରେ କି ଅଖଣ୍ଡ କ୍ଷମତା ? ସେ ନିକଟରେ ମନ୍ତ୍ରୀ ହେବାର ଅଛି ।

"ମାତ୍ର ବେହେରାବାବୁ ଆମକୁ ସମର୍ଥନ କରିବେ କାହିଁକି ?" ପୁଣି କିଏ ପ୍ରଶ୍ନ କଲା ।

ସୌମେନ୍ଦ୍ର ହସ୍ତ ଉତ୍ତୋଳନ କରି ବିଧା ଗୁପଡ଼ର ସଙ୍କେତ ଦେଖାଇ କହିଲା, "କ'ଣ ଗୋପାଳ ଉଠିଗଲାଣି କି ? ଆମକୁ ସମର୍ଥନ ନ କଲେ ବିର୍ ରାସ୍ତା ଉପରେ କଣ୍ଠ ଫିଟାଇ ଦେବ । ଦୁଇ ଦୁଇଟା ନିର୍ବାଚନରେ ତାଙ୍କ ପାଇଁ ଯାହା ସବୁ କଲୁ ସେ ସବୁ କ'ଣ ଏମିତି ମୋଫତ୍ ବାୟେଁ ବାୟେଁ ଉଡ଼ିଯିବ ?"

ମାନସ ତାର ଆଉ ଅଧିକ ସମୟ ନଷ୍ଟ ନ କରିବା ନିମନ୍ତେ ସ୍ଥିର କରି କହିଲା, "ସୌମେନ୍ଦ୍ର, ତୁ ଯା । ତୁମ କଥାରୁ ମୁଁ ବାହାରି ଯିବି ନାହିଁ । ଅନ୍ୟମାନଙ୍କୁ ବୁଝାଅ ।"

ସଦଳବଳେ ଗ୍ରୁପନେତା ସୌମେନ୍ଦ୍ର ଆଗେଇଲା । ମାନସ ମୁଣ୍ଡରେ ହାତ ଦେଇ ମନେ ମନେ କହିଲା, ଯେଉଁଠାରେ 'ଜଙ୍ଗଲର ନିୟମ' ଜୀବନ ନିୟନ୍ତ୍ରଣ କରେ ସେଠାରେ କନ୍‌ସାଇନ୍‌ସର ପ୍ରଶ୍ନ ଉଠୁଛି କେଉଁଠୁ ? ମାନସ ପୁଣି ବହି ଖୋଲି ପଢ଼ିବାକୁ ଚେଷ୍ଟା କଲା । ଯାହା ପାଇଲେ ପରୀକ୍ଷା । ସାଧନା ଆବଶ୍ୟକ । ସାଧନା ବିନା କ'ଣ କିଛି ସମ୍ଭବ ?

ପରୀକ୍ଷା ଘଣ୍ଟା ବାଜି ଉଠିଲା । ମାନସ ସିଗାରେଟ ଫିଙ୍ଗିଦେଇ ହଲ୍ ଭିତରେ ପ୍ରବେଶ କଲା । ହଲ୍ ଭିତରେ ବି କୋଳାହଳ । ପରିଚିତ ମୁହଁ ଯେତିକି ଅପରିଚିତ ମୁହଁ ସେତିକି । ମାନସ ତାର ସ୍ଥାନ ଖୋଜିବାକୁ ଲାଗିଲା । ପଛରୁ କେହି ଜଣେ ପାଟି କଲା—ମାନସ, ଯେଉଁଠାରେ ଇଚ୍ଛା ବସ । ସିଟ୍ ନମ୍ବର ସବୁ କେହି ଉଠାଇ ନେଇଛି । ଯାହାକୁ ଯେପରି ସୁବିଧା ସେ ସେପରି ସ୍ଥାନ ଅଧିକାର କରି ନେଇଛନ୍ତି । ଯେଉଁମାନଙ୍କର ବର୍ଷସାରା ବହି ସଙ୍ଗେ ସାକ୍ଷାତ୍ ନାହିଁ ସେମାନେ ଝରକା କମ୍ବା କବାଟ ନିକଟରେ ସ୍ଥାନ ବାଛି ନେଇଛନ୍ତି । ଯେପରି ବାହାରୁ ସାହାଯ୍ୟ ସହଜରେ ମିଳି ପାରିବ । ତେଣୁ ମାନସ ବାଧ୍ୟ ହେଲା କୌଣସି ଏକ ଖାଲି ଥିବା ସିଟ୍‌ରେ ବସିବାକୁ ।)

ମାନସ ଉତ୍ତର ଲେଖିବା ଆରମ୍ଭ କଲା । ତା ପାଇଁ ଭଲ ପ୍ରଶ୍ନ ଆସିଛି । ସେଥିପାଇଁ ତା ମନରେ ଆତ୍ମସନ୍ତୋଷ । ମାତ୍ର ଅନେକ ଆଶଙ୍କା । ନିର୍ବିଘ୍ନରେ ପରୀକ୍ଷା ଶେଷ ହେବ ତ !

ସର୍ବେଶ୍ୱର ଠାରରେ ଆପଣାର ବନ୍ଧୁକୁ ଜଣାଇ ଦେଲା ପ୍ରଶ୍ନପତ୍ର ବାହାରକୁ ଚାଲି ଗଲଣି । ଘଣ୍ଟାକ ମଧ୍ୟରେ ଉତ୍ତର ଆସିଯିବ । ପାଖରେ ଯାହା ଅଛି ସେଥିରୁ କିଛି ବାଛି ଲେଖିବା ପାଇଁ ସେ ସଙ୍କେତ ଦେଲା । ସମସ୍ତ ବାରଣ ସତ୍ତ୍ୱେ ଯେଉଁମାନେ ବହି ନେଇଥିଲେ ସେମାନେ ପୃଷ୍ଠା ପରେ ପୃଷ୍ଠା ଲେଉଟାଇବାକୁ ଆରମ୍ଭ କଲେ ।

ଇନ୍‌ଭିଜିଲେଟର୍ ହଲ୍ ମଧ୍ୟରେ ପଦଚାରଣ କରି ଚାଲିଥାନ୍ତି । ମଝିରେ ମଝିରେ ଯାହା କେବଳ କହୁଥାନ୍ତି, "ଦୟାକରି ପାଟି ବନ୍ଦ କର, ବହି ରଖିଦିଅ, ନୋ କପି ।" ଇନ୍‌ଭିଜିଲେଟର୍ ଶୈଳେନ୍ଦ୍ରବାବୁ ସବୁ ଜାଣି ନ ଜାଣିଲା ଭଳି ହଲ୍ ମଧ୍ୟରେ ପଦଚାରଣ କରୁଥାନ୍ତି । ସେ କାହିଁକି ପାଟି ଫିଟାଇବେ ? ଜାଣି ଜାଣି ବିପଦ ବରଣ କରିବେ ? ସେ ତ ଆତଙ୍କରେ

ଅଛନ୍ତି । ଛ' ମାସ ପରେ ସେ ହୁଏତ ମୋଟେ କଲେଜରେ ନ ଥାଇ ପାରନ୍ତି । କପି ଧରି ଭୟାବହ ପରିସ୍ଥିତି ସୃଷ୍ଟି କରିବେ କାହିଁକି ? ଜୀବନ ଶଙ୍କାକୁଳ ହୋଇପାରେ । ହାତ କି ଗୋଡ଼ ହରାଇ ପାରନ୍ତି । ଚକ୍ଷୁ ନଷ୍ଟ ହୋଇପାରେ । ତେଣୁ ଯାହା ହେଲେ ବି ସେ କିଛି କହିବେ ନାହିଁ । ଏ ଜାତି ଯେଉଁଆଡ଼େ ଇଚ୍ଛା ସେଇଆଡ଼େ ଯାଉ । ନିର୍ବାଚନ ବିଜୟ ଏବଂ ମନ୍ତ୍ରିତ୍ୱ ଲାଭ ଯେଉଁଠାରେ ବ୍ୟକ୍ତିଗତ ସାଫଲ୍ୟର ପରିମାପକ ; ସମାଜର ଯେଉଁଠାରେ କେବଳ ଦୁର୍ନୀତି କଳାବଜାରର ଗୌରବ ଗାନ, ସେଠାରେ ଯୁବସମାଜକୁ ଉପଦେଶ ଦେବା ନିରର୍ଥକ । ଶିକ୍ଷା ବିଭାଗରେ ହାଙ୍ଗାମା କମ୍, ମାରପେଞ୍ଚ କମ୍ ସେଥିପାଇଁ ତାଙ୍କର ସହପାଠୀ ରଜନବାବୁ ଶେଷରେ ବାଛି ନେଇଥିଲେ ଅଧ୍ୟାପକ ଜୀବନ । କିନ୍ତୁ ହେଲା କ'ଣ ! ପରୀକ୍ଷା ହଲ୍‌ରେ ବୋମା ମାଡ଼ ହେଉ ତାଙ୍କୁ ଏକ ଚକ୍ଷୁ ହରାଇବାକୁ ପଡ଼ିଲା । ସତରେ କି ଭୟଙ୍କର କଥା !

'ସାର୍, ଟିକଏ ପଦାକୁ ଯିବି ?' କେହି ଜଣେ ଛାତ୍ର ତାଙ୍କୁ ଡାକି ସଚେତନ କରାଇଦେଲା ଯେ ସେ ଇନ୍‌ଭିଜିଲେସନ୍ କରୁଛନ୍ତି ।

ଶୈଳେନ୍ଦ୍ରବାବୁଙ୍କ ଦେହରେ କିଛି ଗୋଟାଏ ଆଘାତ ବାଜିବାର ସେ ଅନୁଭବ କଲେ । ପଛକୁ ଦୃଷ୍ଟି ଫେରାଇ ଦେଖିଲେ କାଗଜର ଏକ ଛୋଟ ପେଣ୍ଡୁ । ସେହି କାଗଜ ପିଣ୍ଡୁଳାକୁ ଫିଟାଇ ସେ ଦେଖିଲେ କପି ଯୋଗାଇଦିଅ ସଭ୍ୟ ବନ୍ଧୁମାନଙ୍କ ନିମନ୍ତେ ସେଥିରେ ଚିଠି ଆସିଛି ।

କେହି ଜଣେ ଛାତ୍ର ଅନୁନୟ କଣ୍ଠରେ କହିଲା, "ସାର୍, ଦେଇ ଦିଅନ୍ତୁ ମରିଯିବୁ । କୋଶ୍ଚିନ୍ କୋର୍ସ ବାହାରୁ ଆସିଛି ସାର୍..."

ଶୈଳେନ୍ଦ୍ରବାବୁ କେଉଁ ଛାତ୍ରର ଏ ନିବେଦନ ଜାଣିବା ପାଇଁ ଉଦ୍ୟମ ନ କରି କେବଳ ଚୁମ୍ବକରେ କହିଲେ, "ଯାହା ମନକୁ ଆସୁଛି ଲେଖ ।"

ଶୈଳେନ୍ଦ୍ରବାବୁ ନୟନକୁ ଲକ୍ଷ୍ୟ କରି କହିଲେ, ଯାହା କଲେ ବି ତୁମେ ପାରିବନି । ପାଠ ପଢ଼ିଥିଲେ ସିନା ଉତ୍ତର ଖୋଜି ପାଆନ୍ତ । ସମସ୍ତେ ହସି ଉଠିଲେ । ନୟନ କହିଲା......"ନା ସାର୍, ଆମର ଯାହା ସବୁ ପଢ଼ା ହୋଇନାହିଁ ସେଥିରୁ ହିଁ କେବଳ ଅଧିକାଂଶ ପ୍ରଶ୍ନ ଆସିଛି ।

ନୋହିଲେ ମୁଁ କ'ଣ ନୂଆ ପରୀକ୍ଷା ଦେଉଛି ? ଏଥରକୁ ମିଶାଇ ହେଲା ପାଞ୍ଚ ଥର ।''

ପୁଣି ସମସ୍ତେ ହସି ଉଠିଲେ ।

ମାନସ ଆଉ ସମ୍ଭାଳି ପାରିଲା ନାହିଁ । ତା ନିକଟବର୍ତ୍ତୀ ଝରକା ପାଖରୁ କେହି ଜଣେ ବଡ଼ ପାଟିରେ ଉତ୍ତର ଡାକୁଥାଏ । ସେ ବାଧ୍ୟ ହୋଇ ଠିଆ ହେଲା ଏବଂ ଅନ୍ୟତ୍ର ଆସି ବସି ଲେଖିବା ନିମନ୍ତେ ଇନ୍‌ଭିଜିଲେଟର୍‌ଙ୍କ ଦୃଷ୍ଟି ଆକର୍ଷଣ କଲା । ତାର ଶୋଚନା ଯେ, ସେ ଯାହା ଲେଖିବାକୁ ଚାହୁଁଛି ଏହି ଗୋଳମାଳରେ ଲେଖି ପାରୁନାହିଁ । 'ହାଟ ବଜାର'ରେ ଆଗେଇବା ପାଇଁ ଯେଉଁ ଅଭ୍ୟାସ-ପରୀକ୍ଷା ସେଥିରେ ମାନସ ବା କପରି ଯୋଗ୍ୟତା ଦେଖାଇ ପାରନ୍ତା !

(ଇନ୍‌ଭିଜିଲେଟର୍‌ମାନେ ପ୍ରଶ୍ନ ଦେଇ ଯାଇ ବାରଣ୍ଡାରେ ରହି ସୁଖାଳାପରେ ରତ । ସେମାନଙ୍କ ଭିତରୁ କିଏ କହୁଛି କପି କପରି ହୁଏ ସେ ଜାଣି ନ ଥିଲେ । ତାଙ୍କ ସମୟରେ ଏପରି କଥା ଚିନ୍ତା କରିବା ଛାତ୍ର ପକ୍ଷରେ ସମ୍ଭବପର ନ ଥିଲା । ତାଙ୍କୁ ବ୍ୟଙ୍ଗ କରି ନିମେଇଁବାକୁ କହୁଥିଲେ—ଆପଣଙ୍କ ସମୟରେ ଡାଲଡା ଥିଲା ? କେହି ଚନ୍ଦ୍ରକୁ ଯାଇଥିଲେ ? ନିରୋଧ କ'ଣ ଜାଣିଥିଲେ ? ସେହିପରି ପରୀକ୍ଷା-ସମୁଦ୍ର ପାରିହେବା ନିମନ୍ତେ ଏ ହେଲା ନୂଆ ପଦ୍ଧତି । ସବୁ ଦେଖିବାକୁ ହେବ ।)

କେତେକ ରୁମ୍‌ରେ ଅଧ୍ୟାପକମାନେ ପ୍ରଶ୍ନ କାଗଜ ନ ବାଣ୍ଟି ଛାତ୍ରମାନେ ନିଜେ ପ୍ରଶ୍ନ କାଗଜ ଉଠାଇ ନେବାକୁ କହିଲେଣି । ମାଡ଼ ଭୟ କାହାର ବା ନାହିଁ ?

ମାନସ ଠିଆ ହୋଇ କହିଲା, ''ସାର୍, ପେପର୍ ।'' କାଗଜ ବଢ଼ାଇ ଦେଉ ଦେଉ ଅଧ୍ୟାପକ ପ୍ରଶ୍ନ କଲେ, ''କ'ଣ ମାନସ କପରି ହୋଇଛି ? ଫାଷ୍ଟ ହେବ ତ ?''

''ସାର୍, ସବୁ ତ ଦେଖୁଛନ୍ତି । କ'ଣ କହିବି ! ତେବେ 'କ' ବହିରେ ଯାହା ଲେଖା ଯାଇଛି ତାଠାରୁ ମୋର ଉତ୍ତର ଯେ ସମ୍ପୂର୍ଣ୍ଣ ଭିନ୍ନ, ଏତିକ ଯଦି ପରୀକ୍ଷକ ଧରିପାରିବେ, ତେବେ ମୋର ଚାନ୍‌ସ ଅଛି ।''

'ଅନ୍‌ଫରଚୁନେଟ୍' କହି ଅଧ୍ୟାପକ ଚାଲିଗଲେ । ମାନସ ପୁଣି ଲେଖି ଚାଲିଲା । ପରୀକ୍ଷା ହଲ୍ କିଛି ସମୟ ପାଇଁ ଶାନ୍ତ ନୀରବ । ପରୀକ୍ଷା

ହଲ୍ ବାରଣ୍ଡାରେ ଧାଁ ଧପଡ଼ ନାହିଁ । ଶେଷ ଆଡ଼କୁ ପରୀକ୍ଷାର ଧର୍ମ ହୋଇଯାଇଛି, 'ଡୁ ଆଜ୍ ୟୁ ପ୍ଲିଜ୍ ।'

ପରୀକ୍ଷା ଶେଷ ହେବା ପରେ ବର୍ଷର ଗୋଟାଏ ମହାନ୍ ପର୍ବର ପରିସମାପ୍ତି ହେବ । ଶିକ୍ଷକମାନେ ରକ୍ଷା ପାଇବେ । ଅଭିଭାବକଙ୍କ ମୁଣ୍ଡରୁ ବୋଝ ଓହ୍ଲାଇ ପଡ଼ିବ । ପୋଲିସ୍ ନିଶ୍ଚିନ୍ତ ହେବେ । ଛାତ୍ର ଜୀବନର ଶେଷ ପରେ ଏକ ବାସ୍ତବ ଜୀବନରେ ପଦାର୍ପଣ କରିବେ ଏହି ବିଦ୍ୟାର୍ଥୀମାନେ । ଏମାନେ ହେବେ ଜାତିର ଆଲୋକ ଶିଖା ।

ପରୀକ୍ଷାର ଶେଷ ଘଣ୍ଟା ବାଜିଲା ! ମାନସ ଉତ୍ତର ଖାତା ସବ୍‌ମିଟ୍ କରି ବାହାରକୁ ଆସି ଦେଖିଲା କଲେଜ ଗେଟ୍ ସମ୍ମୁଖରେ ଶାନ୍ତି ରକ୍ଷାକାରୀ ପୋଲିସ୍ । ମାନସର ମାନସ-ରାଜ୍ୟରେ ଆଲୋଡ଼ନ । ଶିକ୍ଷାନୁଷ୍ଠାନରେ ଆଉ ଶିକ୍ଷକ ରହିବେ କାହିଁକି ?

ପ୍ରିନ୍‌ସପାଲ ପଛରୁ ଡାକିଲେ, "ମାନସ, ପରୀକ୍ଷା ସରିଲା ?"

"ସାର୍ ।"

"କ'ଣ ଦେଖୁଛ ?"

"କିଛି ନାହିଁ ।" ମାନସର ସମ୍ଭ୍ରମ ଉତ୍ତର ।

"କିଛି ଦେଖି ପାରୁନାହିଁ ? ନଟ୍ ଦିସ୍ ହ୍ୱାଇଟ୍ ଟେଣ୍ଟ୍ ?"

"ହଁ, ଦେଖୁଛି ସାର୍ ।"

ହଁ, ସେଇ କଥା କହୁଛି । 'ଆଇ ହେଟ୍ ଦିସ୍ । ଦିସ୍ ଇଜ୍ ଏ ଡିସ୍‌ଗ୍ରେସ୍ ଟୁ ଅଲ୍ ଅଫ୍ ୟୁ ।'

ନୀରବ ରହିଲା ମାନସ । ଆଦର୍ଶବାଦୀ ଅଧ୍ୟକ୍ଷ ଡଃ ରାୟଗୁରୁ କଲେଜ ଆଡ଼କୁ ଆଗେଇଲେ ।

ମାନସ ହଷ୍ଟେଲରେ ପହଞ୍ଚି ଯାହା ଦେଖିଲା ସେଥିରେ ଆଶ୍ଚର୍ଯ୍ୟ ହେଲା ନାହିଁ । ସମସ୍ତେ ଉତ୍ତର ଲେଖି ଚାଲିଛନ୍ତି । ମାତ୍ର ସେ ମନେ ମନେ କାହିଁକି କେଜାଣି ଧରିନେଲା ଅଧ୍ୟକ୍ଷ ରାୟଗୁରୁ ଆଜ ଏ ସବୁ ସହିବେ ନାହିଁ । ସେ ଜାଣନ୍ତି କେଉଁଠାରେ କାହାକୁ କିପରି ଅଟକେଇବାକୁ ହେବ ।

ଅଧ୍ୟାପକମାନେ ଆସି ରିପୋର୍ଟ କଲେ······ସାର୍, ପିଲାମାନେ ଏପର୍ଯ୍ୟନ୍ତ ଆନ୍‌ସର୍ ପେପର୍ ଫେରାଇଲେ ନାହିଁ ।

ଠିକ୍ ଅଛି । ଯେଉଁମାନେ ପେପର୍ ଫେରାଇଛନ୍ତି ତାହା ସବ୍‌ମିଟ୍ କରି ଦେଇଯାନ୍ତୁ । ମୁଁ ଅନ୍ୟ କଥା ବୁଝିବି । ଅଧ୍ୟକ୍ଷ ମହାଶୟ ଦୃଢ଼ କଣ୍ଠରେ ଆଶ୍ୱାସନା ଦେଲେ ।

ଅଫିସ ଘଣ୍ଟାରେ ଛ' ବାଜିଲା । ଆଲୁଅ ଜଳି ଉଠିଲା । ପରୀକ୍ଷାର୍ଥୀ-ମାନେ ତାଙ୍କର ପରୀକ୍ଷା ଖାତା ଫେରାଇବାକୁ ଆସି ଜମା ହେଲେ । ଅଧ୍ୟକ୍ଷଙ୍କୁ ପେପର୍ ରଖିବା ପାଇଁ ଦାବୀ କଲେ ।

ଚଷମା କାଚ ସଫା କରି ରାୟଗୁରୁବାବୁ ଛାତ୍ରମାନଙ୍କୁ ସ୍ନେହରେ ପ୍ରଶ୍ନ କଲେ, "କି ପେପର୍ ?"

"ପରୀକ୍ଷା ଖାତା ସାର୍ !"

"ଖାତା ଫେରାଇବା ସମୟ ଉତ୍ତର ହୋଇ ଯାଇଛି ।"

"ସାର୍, ତେବେ ଆମ ଖାତା ରଖିବେ ନାହିଁ ? ଆମ୍ଭେ ସମସ୍ତେ ଫେଲ୍ ହେବୁ ? ଏହି ବର୍ଷର ପରିଶ୍ରମ ବ୍ୟର୍ଥ ହୋଇଯିବ ?"

"ମୁଁ ନିୟମ ବହିର୍ଭୂତ କୌଣସି କାମ କରି ପାରିବି ନାହିଁ । ଦୀର୍ଘ ଦିନ ଶିକ୍ଷକ ଜୀବନରେ କେବେ ମୁଁ ବିଶୃଙ୍ଖଳାକୁ ପ୍ରଶ୍ରୟ ଦେଇ ନାହିଁ, ଦେଇ ପାରିବି ନାହିଁ ।"

ପଛରୁ ବହୁ ଅଶ୍ଳୀଳ ବ୍ୟଙ୍ଗୋକ୍ତି ଶୁଣା ଯାଉଥାଏ । ଛାତ୍ରନେତା ଉତ୍‌କ୍ଷିପ୍ତ ହୋଇ ପ୍ରଶ୍ନ କଲେ, "ଶେଷ ଥର ପାଇଁ ପଚାରୁଛି ପେପର୍ ରଖିବ କି ନାହିଁ ?"

"ଥରେ ନାହିଁ କଲି । ତୁମ୍ଭେମାନେ ସବୁ ଏଠାରୁ ଚାଲିଯାଅ ।"

"ଚାଲିଯିବୁ ! ଶଳା କ'ଣ ଭାବିଲାଣି" କହି ଜଣେ ହଠାତ୍ ତାଙ୍କ ଚଷମା ଉଠାଇ ଆଣି ଫିଙ୍ଗିଦେଲା । ଆଉ ଜଣେ କେହି ତାଙ୍କର କଲର୍ ଭିଡ଼ି ଦେବା ଫଳରେ ସେ ତଳେ ପଡ଼ିଗଲେ । ପଛରୁ ଶୁଭିଲା 'ବଜା ଶଳାକୁ ବଜା, ଡିସିପ୍ଲିନ୍ ଦେଖାଉଛି । ଆମକୁ ସିଏ ଚିହ୍ନି ନାହିଁ ।'

ଛାତ୍ରଭିଡ଼ ଭେଦ କରି ଅନ୍ୟାନ୍ୟ ଅଧ୍ୟାପକମାନେ ଯାଇ ରାୟଗୁରୁ-ବାବୁଙ୍କୁ ଟେକି ଉଠାଇଲେ । ସେ ଉଠି ପୁଣି ଚୌକିରେ ବସି ଗମ୍ଭୀରଭାବେ କହିଲେ, "ବନ୍ଧୁମାନେ, ମୁଣ୍ଡରେ ମୋର ଆଘାତ ଦେଖି ବିବ୍ରତ

ହୋଇପଡ଼ ନାହିଁ । ସେମାନେ ମୋତେ ମାଡ଼ ଦେଇଛନ୍ତି, ମୋର ଚଷମା ନଷ୍ଟ କରି ଦେଇଛନ୍ତି, ମୁଁ ଯଥାର୍ଥରେ ଆଜି ଅନ୍ଧ, ସେମାନଙ୍କୁ ଛାଡ଼ିଦିଅ । ତାଙ୍କ ମନ ଖୁସି ହେବା ପର୍ଯ୍ୟନ୍ତ ମୋତେ ମାଡ଼ ମାରନ୍ତୁ । ଦୀର୍ଘ ଦିନ ଧରି ଶିକ୍ଷକରୂପେ ମୁଁ ଏ ଜାତିର ସେବା କରି ଆସିଛି । ଏହାହିଁ ମୋର ପ୍ରାପ୍ୟ । ତେବେ ଗୋଟିଏ କଥା ମନେ ରଖନ୍ତୁ·····ମୁଁ ବିଶୃଙ୍ଖଳାକୁ ଉତ୍ସାହିତ କରି ପାରିବି ନାହିଁ । ଏମ୍. ଏଲ୍. ଏ. ପରେ ମନ୍ତ୍ରୀ, ମନ୍ତ୍ରୀ ପରେ ରାଜ୍ୟପାଳ ହେବାର ଲୋଭ ମୋର ନାହିଁ । ଏପରି ଜନ ସମର୍ଥନ, ଶସ୍ତା ଲୋକପ୍ରିୟତା ମୋର ଲୋଡ଼ା ନାହିଁ । ମୁଁ ଆଦର୍ଶ ଶିକ୍ଷକରୂପେ ଏ ଜାତିକୁ ଶୃଙ୍ଖଳିତ, ଶିକ୍ଷିତ କରିବାକୁ ଶପଥ ନେଇଛି । ତାହାହିଁ ଶେଷ ପର୍ଯ୍ୟନ୍ତ କରିଯିବି ।

ମୋର ଦାୟିତ୍ୱ ମୁଁ ସମାପନ କରିଛି । ଗୋଟିଏ ବୋଲି ପୁଅ ତାକୁ ମଣିଷ କରି ସାରିଛି । ଏ ପରିଣତ ବୟସରେ ମୋର ଆଉ କିଛି ଆବଶ୍ୟକ ନାହିଁ । ଅବସର ନେବା ପରେ ମୁଁ ଏଇ ଢଗରେଇ କଲେଜକୁ ଅଧ୍ୟକ୍ଷ ହୋଇ ଆସି ନ ଥିଲି ପଇସା ପାଇଁ । ଆସିଥିଲି ଏହି ବୟସରେ ଯେତିକି ପାରେ ଏହି ଯୁବକମାନଙ୍କ ଭିତରେ ଜ୍ଞାନ ବିତରଣ କରିବା ପାଇଁ । ମାତ୍ର ଦୁର୍ଭାଗ୍ୟ ମୋର । ଦୁର୍ଭାଗ୍ୟ ଏ ଦେଶର ।"

ରାୟଗୁରୁବାବୁଙ୍କ ଅଫିସରେ ସହକର୍ମୀବୃନ୍ଦ ଘେରି ଠିଆ ହୋଇଥାନ୍ତି । ସମସ୍ତେ ମୂକ । କକ୍ଷ ମଧ୍ୟରେ ଝଡ଼ ଅବସାନର ଶାନ୍ତ ପରିବେଶ । କିଛି ସମୟ ପରେ ନରହରିବାବୁ ନାରାୟଣବାବୁଙ୍କ ହଲାଇ କହିଲେ, "ବସିଛ କ'ଣ ! ପୋଲିସ୍ ଷ୍ଟେସନକୁ ଫୋନ୍ କର ।"

"ପୋଲିସ୍ ଷ୍ଟେସନକୁ ଫୋନ୍ କରିବାର ଆବଶ୍ୟକତା ନାହିଁ । ମୁଁ ମାମଲା କରିବାକୁ ଏଠାକୁ ଆସି ନ ଥିଲି । ଷ୍ଟେନୋବାବୁଙ୍କୁ କହ ଖାତା ପେନ୍‌ସିଲ୍ ଧରି ଆସିବେ ।"

ସମସ୍ତେ ସ୍ତମ୍ଭୀଭୂତ ହେଲେ । ଅଜବ ମଣିଷ ରାୟଗୁରୁବାବୁ କ ଡିକ୍‌ଟେସନ୍ ଦେବେ ଶୁଣିବା ପାଇଁ ସମସ୍ତେ ବ୍ୟଗ୍ର ହୋଇ ଉଠିଲେ । ରାୟଗୁରୁବାବୁ ପୂର୍ବପରି ସ୍ପଷ୍ଟ ଉଚ୍ଚାରଣ କରି ଡିକ୍‌ଟେସନ୍ ଦେଇ କହିଲେ ସଙ୍ଗେ ସଙ୍ଗେ ଟାଇପ୍ କରି ଆଣ । ମୁଁ ଅଫିସ ଛାଡ଼ିବା ପୂର୍ବରୁ ଏ ସବୁ କାମ ଶେଷ କରିଦେଇ ଚାଲିଯିବି । କେଇଟି ମୁହୂର୍ତ୍ତ ମଧ୍ୟରେ ଘଟଣାଟି ଚାରିଆଡ଼େ ପ୍ରଚାରିତ ହୋଇଗଲା । ସମସ୍ତେ ଆହତ ହେଲେ ।

ଗୁରୁଗମ୍ଭୀରଭାବେ ସପୂଗୁରୁବାବୁ ଠିଆ ହେଲେ । ବନ୍ଧୁ ସହକର୍ମୀ ଷ୍ଟାଫ୍ ମେମ୍ବରମାନଙ୍କ ଉଦ୍ଦେଶ୍ୟରେ ଯୋଡ଼ହସ୍ତରେ ନମସ୍କାର ଜଣାଇ କହିଲେ, "କଲେଜରେ ଏ ମୋର ଶେଷ ଦିନ । ସମୂହ ସ୍ୱାର୍ଥ ପାଇଁ ମୁଁ କାହା ପ୍ରତି ହୁଏତ କେତେବେଳେ ରୁକ୍ଷ ହୋଇଥିବି । ଏଥିପାଇଁ ମୋତେ ଯେପରି କେହି ଭୁଲ ନ ବୁଝନ୍ତୁ ।"



କକ୍ଷ ମଧ୍ୟରୁ ବାହାରି ଆସି ପ୍ରଥମେ ଯେଉଁ କେତେଜଣ ବାରଣ୍ଡାରେ ଦଣ୍ଡାୟମାନ ଥିଲେ ସେମାନଙ୍କ ମଧ୍ୟରୁ ଡଃ ସପୂଗୁରୁଙ୍କ ଦୃଷ୍ଟି ଆକର୍ଷଣ କଲା ମାନସ । ସେ ମାନସ ଉଦ୍ଦେଶ୍ୟରେ ପ୍ରଶ୍ନ କଲେ, "ହାଭ୍ ୟୁ ସବ୍ମିଟେଡ୍ ୟୋର୍ ଆନ୍ସାର୍ ପେପର୍ ଇନ୍ ରାଇଟ୍ ଟାଇମ୍ ?"

"ଇଏସ୍ ସାର୍ ।" ନମ୍ର କଣ୍ଠରେ ଉତ୍ତର ଦେଲା ମାନସ । "ଦାଟ୍ସ ଲାଇକ୍ ଏ ଗୁଡ୍ ବଏ" କହି ସେ ହାତ ରଖିଲେ ମାନସର କାନ୍ଧ ଉପରେ । "ମାନସ, ମୁଁ ଯେଉଁଦିନ ପ୍ରଥମେ ଏ କଲେଜକୁ ଆସିଥିଲି ତୁମେ ଅନ୍ୟମାନଙ୍କ ସାଙ୍ଗରେ ମୋତେ ପାଛୋଟି ଆଣିବାକୁ ଯାଇଥିଲ । ଆଜି ମୁଁ କଲେଜ ଛାଡ଼ୁଛି । ଚାଲ, ମୋତେ ପୋର୍ଟିକୋ ପର୍ଯ୍ୟନ୍ତ ବଳେଇ ଦେଇ ଆସିବ । ଆସ୍ତେ, ଧୀରେ ଚାଲ । ମୁଁ ତୁମକୁ ଧରି ଏ ପାହାଚ ଓହ୍ଲାଇବି । ମୋ ଚଷମା ତୁମ ବନ୍ଧୁମାନେ ଭାଙ୍ଗି ଦେଇଛନ୍ତି, ମୁଁ ଅନ୍ଧ ହୋଇଯାଇଛି ।"

ରଘୁଗୁରୁବାବୁ ଗାଡ଼ିରେ ବସିଲେ । ପାଖରେ ବସିଲେ କଲେଜ ୟୁନିୟନ ଆଡ୍‌ଭାଇଜର୍ ମହାନ୍ତିବାବୁ । ତାଙ୍କ ପାଖକୁ ହେଡ୍ କ୍ଲର୍କ । ଅନ୍ୟମାନେ ସମସ୍ତେ ଅଶ୍ରୁଳ ନୟନରେ ଚାହିଁ ରହିଲେ । ଗାଡ଼ି ଷ୍ଟାର୍ଟ ଦେଲା । ରଘୁଗୁରୁବାବୁ ଯୋଡ଼ହସ୍ତରେ ସମସ୍ତଙ୍କଠାରୁ ବିଦାୟ ନେଲେ । କଲେଜ ହତା ଛାଡ଼ିବା ପୂର୍ବରୁ କଲେଜ କୋଠାକୁ ଚାହିଁ ରଘୁଗୁରୁବାବୁ ହେଡ୍ କ୍ଲର୍କଙ୍କୁ କହିଲେ, ‘‘ବ୍ରଜବାବୁ ! ଏଥର ବର୍ଷ କେବଳ ଇଷ୍ଟ ବ୍ଲକ୍ ହ୍ୱାଇଟ୍ ଓ୍ୱାସ୍ ହୋଇ ପାରିଲା ନାହିଁ ।’’

# ସମାଜ ଚରଣୀ

**ଅଧ୍ୟାପକ ଜଗନ୍ନାଥ ମହାନ୍ତି**

କାର୍‌ଟି ହର୍ଣ୍ଣ ଦେଇ ଜନଗହଳ ରାସ୍ତାରେ ଆଗେଇ ଚାଲିଛି । ହଠାତ୍ ବ୍ରେକ୍ ଦେଇ ତାହା ରହିଗଲା ଜଣେ ବୃଦ୍ଧ ଭଦ୍ରବ୍ୟକ୍ତିଙ୍କ ପାର୍ଶ୍ୱରେ । ସମସ୍ତେ ଚକିତ ହୋଇ ଚାହିଁ ରହିଲେ କ'ଣ ଗୋଟେ ଅଘଟଣ ଘଟିଗଲା ବୋଲି ।

ଭଦ୍ରବ୍ୟକ୍ତି ଜଣକ ଚମକି ପଡ଼ିଲେ । କେତେ କ'ଣ ଅନ୍ୟମନସ୍କ ହୋଇ ଭାବି ଚାଲିଥିଲେ । ପୁଣି ବାର୍ଦ୍ଧକ୍ୟଜନିତ ଦୁର୍ବଳତା ତାଙ୍କର ଗତିକୁ ଆହୁରି ମନ୍ଥର କରିଦେଇଥିଲା । ଯେଉଁ ଅନୁଷ୍ଠାନର ଦାୟିତ୍ୱରେ ସେ ଅର୍ଦ୍ଧ ପଞ୍ଚବିଂଶ ବର୍ଷ ହେଲା ରହି ଆସିଛନ୍ତି, ତାର ପ୍ରତିଟି ଧୂଳିବାଲି, ଘାସପତ୍ର, ଇଟାପଥର ସହିତ ସେ ନିବିଡ଼ ଭାବରେ ପରିଚିତ । ତାଙ୍କର ନିରନ୍ତର ଭାବନା ଅନୁଷ୍ଠାନର ମଙ୍ଗଳ ନିମନ୍ତେ, ସୁପରିଚାଳନା ନିମିତ୍ତ ସେ ଆଉ କ'ଣ କରି ପାରିବେ ? କେଉଁ କଥା ଆଉ ବାକି ରହିଲା ? ବାଟରେ ଭାବି ଭାବି ଚାଲନ୍ତି କେଉଁ କେଉଁ ବିଷୟରେ ଶିକ୍ଷାଦାନ କରିବାକୁ ହେବ, ସେଗୁଡ଼ିକ କିପରି ଭାବରେ କୋମଳମତି ଚପଳ ବାଳକବାଳିକାମାନଙ୍କ ପାଖରେ ଉପସ୍ଥାପନ କରିବେ ? ଆଖପାଖରୁ କି କି ଉପକରଣ ସଂଗ୍ରହ କରିବେ ? ସେଗୁଡ଼ିକ ସହଯୋଗରେ ସେ ପିଲାମାନଙ୍କ ମନରେ କିପରି ଗଭୀର ରେଖାପାତ କରି ପାରିବେ ?

ସେ ଯୋଡ଼ହସ୍ତରେ ନିଜର ଦୋଷ ସ୍ୱୀକାର କରୁଥିବା ଭଙ୍ଗୀରେ କାର୍ ଆଡ଼କୁ ଚାହିଁ ରହିଲେ । ସେ ବୋଧହୁଏ ଅନ୍ୟମନସ୍କ ହୋଇ ଠିକ୍ ଭାବରେ ରାସ୍ତାରେ ଯାଉ ନ ଥିଲେ, କାର୍ ତଳେ ହୁଏତ ଚାପା ପଡ଼ି ଯାଇଥାନ୍ତେ । କେଡ଼େ ବଡ଼ ଦୁର୍ଘଟଣା ଘଟି ଯାଇଥାନ୍ତା ସତେ ! କାର୍‌ଟା ସିନା ଦୁର୍ଘଟଣାକୁ ଏଡ଼ାଇ ପାରିଲା ! ହେଲେ ଗାଡ଼ି ଭିତର ବାବୁ କ'ଣ ନ କହିବେ ?

କିନ୍ତୁ କି ଆଶ୍ଚର୍ଯ୍ୟର କଥା ! କାର୍ ଭିତରୁ ସେ ବାବୁ ବାହାରି ଆସି ବୃଦ୍ଧଙ୍କୁ ସାଷ୍ଟାଙ୍ଗ ପ୍ରଣାମ ଜଣାଇଲେ । ହାତଯୋଡ଼ି ହସ ହସ ମୁହଁରେ କହିଲେ, "ସାର୍, କ୍ଷମା ଦେବେ । ଆପଣଙ୍କ ଯିବାରେ ମୁଁ ବାଧା ଦେଲି !"

ବୃଦ୍ଧ ହରଶଙ୍କର ବିସ୍ମିତ ହୋଇ ଚିହ୍ନିଲେ ତାଙ୍କର ପ୍ରିୟ ଛାତ୍ର ରାମପ୍ରସାଦ । ପାକୁଆ ପାଟିରେ ହସ ଫୁଟାଇ ସେ କହିଉଠିଲେ, "କିରେ ରାମୁ ! କୁଆଡ଼େ ? ବହୁଦିନ ପରେ ଦେଖା ! କେଉଁଠୁ ଆସିଲୁ କହିଲୁ ?" ଅତି ଆନନ୍ଦରେ ହରଶଙ୍କର ତାଙ୍କୁ କୁଣ୍ଢାଇ ପକାଇଲେ ।

ରାମପ୍ରସାଦ କହିଲେ, "ସାର୍, ମୁଁ ଏଠାକୁ ଏବେ ବଦଳି ହୋଇ ଆସିଚି । ଆଜି ଏଇବାଟେ ଅଫିସକୁ ଯାଉଥିଲି, ଆପଣଙ୍କୁ ଦେଖି ଗାଡ଼ି ଅଟକାଇ ଦେଲି । ଚାଲନ୍ତୁ, ଏହି ଗାଡ଼ିରେ ଆପଣଙ୍କୁ ନେଇ ସ୍କୁଲରେ ଛାଡ଼ିଦେବି ।"

ହରଶଙ୍କରଙ୍କର ମନେପଡ଼ିଲା ବହୁଦିନ ତଳେ ରାମପ୍ରସାଦ ମାଜିଷ୍ଟ୍ରେଟ୍ ହୋଇ ଆସିବା କଥା ସେ ଶୁଣିଥିଲେ । ସେ କହିଲେ, "ତା ମୋ ଜାତକରେ ନାହିଁ ରାମ । ଏମିତି ଏଇ ଦି' ପାଦରେ ଚାଲି ଚାଲି ଜୀବନଟା ସରିଲାଣି ଆସି । ଆଉ ଏ ଗାଡ଼ିରେ ଚାରି ଚକ ଉପରେ ନିର୍ଭର କରିବାକୁ ବଳ ବଅସ କାହିଁ ?"

ରାମପ୍ରସାଦ ବଡ଼ କାକୁତିମିନତି କରି କହିଲେ, "ସାର୍, ମୋତେ ନିରାଶ କରନ୍ତୁ ନାହିଁ । ଏଥିରେ କ'ଣ ନୀତିବିରୁଦ୍ଧ ହୋଇଯିବ ? କାର୍‌ଟା ତ ଯାଉଚି । ଆପଣ ଟିକିଏ ବସିଗଲେ ସାଥି ହୋଇ ଯା'ନ୍ତେ । ମୋର ଅନୁରୋଧ, ଚାଲନ୍ତୁ ।"

"ଆଉ ଲଗାଅ ନାହିଁ ରାମ । ମୁଁ ଖାଲି ଚାଲେ ନାହିଁ । ଚାଲିବା ସଙ୍ଗରେ ମୋର ଅନେକ କାମ ବି ହୋଇଯାଏ । ସ୍କୁଲ ଚଳାଇବାଠାରୁ ପାଠ ପଢ଼ାଇବା ଯାଏ ସବୁ କାମ ପାଇଁ ଏଥିଭିତରେ ପ୍ରସ୍ତୁତ ହୋଇଯାଏ । ତାପରେ ଏ ଦିନିଦିନିଆ ଅଭ୍ୟାସଟା ଭାଙ୍ଗିଲେ ମୋତେ ଭଲ ଲାଗେ ନାହିଁ । ତୋର ବିଳମ୍ବ ହେଉଛି । ତୁ ଯାଆ, କେବେ ମୋ ସ୍କୁଲକୁ ବୁଲି ଆସିବୁ ।"

ସମସ୍ତେ ବସିଛନ୍ତି ହୋଇ ଶୁଣୁଥାନ୍ତି ଏଇ ଗୁରୁଶିଷ ଦୁହିଁଙ୍କୁ । ରାମପ୍ରସାଦ ଆଉ ବେଶି ବଳାଇବାକୁ ଗଲେ ନାହିଁ । ପୁଣି ବିନମ୍ର ପ୍ରଣାମ ଜଣାଇ ଗୁରୁଙ୍କଠାରୁ ବିଦାୟ ନେଲେ ।

ରାମପ୍ରସାଦ ଚାଲିଗଲେ ସିନା, ମନରେ ତାଙ୍କର ରହିଗଲା ଗଭୀର ଆଘାତ, ପରାଜୟର ଗ୍ଳାନି । ଏଇ ସାମାନ୍ୟ ଅନୁରୋଧଟା ରକ୍ଷା କରିପାରିଲ ନାହିଁ । କେତେ ବଜ୍ର କଠୋର ମନୁଷ୍ୟ ସତେ ! ପରେ ପରେ ସେ ଭାବିନେଲେ—ହଁ, ସେ ପ୍ରଥମରୁ ତ ଏଇପରି । ନିଜର ନୀତି ଓ ଲକ୍ଷ୍ୟ ଉପରେ ସେ ସବୁଦିନେ ଅଟଳ, ଅଚଳ । ଯେତେ ବାଧାବିଘ୍ନ ଆସୁ, ଯେତେ ଦୁଃଖକଷ୍ଟ ହେଉ, ସେ ତାଙ୍କର କର୍ତ୍ତବ୍ୟ କରି ଚାଲିଥିବେ । ତାଙ୍କର ଦୃଢ଼ ମନୋବଳ ଆଉ କର୍ତ୍ତବ୍ୟନିଷ୍ଠା ନିକଟରେ ସବୁ ଅନୁରୋଧ, ପ୍ରାର୍ଥନା, ସ୍ନେହ, ଭକ୍ତି ପରାସ୍ତ ହୁଏ ।

ତାଙ୍କର ମନେ ପଡ଼ିଗଲା ଅତୀତର ସେହି ଅବିସ୍ମରଣୀୟ ଘଟଣା । ମହାତ୍ମା ଗାନ୍ଧୀ ସେତେବେଳେ ଦେଶସାରା ହରିଜନ ଆନ୍ଦୋଳନ ଆରମ୍ଭ କରିଦେଇଥାନ୍ତି । ଅସ୍ପୃଶ୍ୟତା ବିରୁଦ୍ଧରେ ସେ ଅକ୍ଳାନ୍ତ ଭାବରେ କାର୍ଯ୍ୟ କରୁଥାନ୍ତି । ଏଇ ସମୟରେ ହରିଶଙ୍କର ଜଣେ କର୍ମତତ୍ପର ଯୁବକ । ଦେହରେ ତାଙ୍କର ଅକଳନ୍ତା ବଳ, ମନରେ ଅଦମ୍ୟ ଉତ୍ସାହ । ସେ ସମସ୍ତ ସାମାଜିକ କୁସଂସ୍କାର ବିରୁଦ୍ଧରେ ଘୋର ଦର୍ପରେ ଲଢ଼େଇ କରୁଥାନ୍ତି । ସମାଜର ରକ୍ଷଣଶୀଳ ଗୋଷ୍ଠୀ ତାଙ୍କୁ ଅହରହ ଆକ୍ରମଣ କରୁଥାନ୍ତି । ନାନା ନିର୍ଯାତନା ଓ ଅତ୍ୟାଚାରର ମଧ୍ୟରେ ସେ ନିଜର ସାଧନା ପଥରେ ଆଗେଇ ଚାଲିଥାନ୍ତି ।

'ଅନ୍ଧାର ମଣି' ବିଦ୍ୟାଳୟଟିଏ ଗଢ଼ି ସେ ଅନ୍ଧକାର ଅଞ୍ଚଳରେ ଆଲୋକର ଦିହୁଡ଼ି ଜାଳିବାକୁ ମନ ବଳାଇଥାନ୍ତି । ଏକାଗ୍ର ଚିତ୍ତରେ ସେ ଗ୍ରାମଗୁଡ଼ିକର ଉନ୍ନତି ପାଇଁ ଚେଷ୍ଟା କରୁଥାନ୍ତି । ଅଶିକ୍ଷିତ, ନିରୀହ ଜନତାକୁ ବୁଝାଇ ସୁଝାଇ, ଧନିକ, କୁଳୀନ ବ୍ୟକ୍ତିମାନଙ୍କର ଅନ୍ୟାୟ ଅତ୍ୟାଚାରର ବିରୁଦ୍ଧରେ ସ୍ୱର ଉଠାଉଥାନ୍ତି । ଲୋକମାନେ ଶିକ୍ଷାଦୀକ୍ଷା ପାଇ ଏକତାବଦ୍ଧ ହୋଇ ଗ୍ରାମଗୁଡ଼ିକର ମଙ୍ଗଳ ଦିଗରେ ଲାଗିପଡ଼ିଥାନ୍ତି । ଏସବୁ କଥା ନିହିତସ୍ୱାର୍ଥ ଦଳଙ୍କର ଅସହ୍ୟ ହେଲା । ହରିଶଙ୍କରଙ୍କୁ ଏସବୁ ନାଟର ଗୋବର୍ଦ୍ଧନ ଭାବି ତାଙ୍କ ବିରୁଦ୍ଧରେ ନାନା ଷଡ଼ଯନ୍ତ୍ର ଚାଲିଲା ।

ଏହି ପରିସ୍ଥିତି ଚରମ ଅବସ୍ଥାରେ ପହଞ୍ଚିଲା, ଯେତେବେଳେ ହରିଶଙ୍କର ହରିଜନ ପିଲମାନଙ୍କୁ ନେଇ ସ୍କୁଲରେ ପାଠ ପଢ଼ାଇଲେ । ଯେଉଁମାନଙ୍କ ଘୁଇ ପଡ଼ିଲେ ମନୁଷ୍ୟ ଛୁଆଁ ହେଉଥିଲା, ସେମାନଙ୍କର ପିଲମାନଙ୍କ ସହିତ ଦେହକୁ ଦେହ ଲଗାଇ ପୁଣି ସମାଜ ପଣ୍ଡାମାନଙ୍କର ପିଲଏ ପାଠ ପଢ଼ିବେ ? ନ ହେଲା ସେ ପାଠପଢ଼ା । ନ ହେଲା ସେ ସ୍କୁଲ । କ୍ରମେ ସ୍କୁଲରୁ ସେମାନଙ୍କ ପିଲମାନେ ଗୁଳିଗଲେ । କେବଳ ହରିଜନ ପିଲଏ ରହିଲେ । ଅକାରଣରେ ଶତ ଷଡ଼ଯନ୍ତ୍ର ଓ ମନୋମାଳିନ୍ୟର ସୂତ୍ରପାତ ହେଲା ।

ନାନା ପ୍ରକାର ଅତ୍ୟାଗ୍ଭର ଓ ଅପମାନ ଭିତରେ ହରିଶଙ୍କର ନିର୍ବିକାର ଭାବରେ ତାଙ୍କର କର୍ତ୍ତବ୍ୟ କରି ଯାଉଥିଲେ । ଯେତେବେଳେ କୁଳୀନ ଓ ହରିଜନମାନଙ୍କ ମଧ୍ୟରେ ସଂଘର୍ଷର ସୂଚନା ମିଳୁଥିଲା, ସେ ସାହସର ସହିତ ଉଭୟ ଦଳର ସମ୍ମୁଖୀନ ହୋଇ ଶାନ୍ତି ଓ ସଦାଚାର ମହାମନ୍ତ୍ର ପ୍ରଗ୍ଭର କରୁଥିଲେ । ତାଙ୍କ ମନରେ ମାନ ଅପମାନ କିଛି ନ ଥିଲା । ବରଂ କାହାର କିଛି ବିପତ୍ତି ଆପତ୍ତି ପଡ଼ିଲେ ସେ ସବୁ ଭୁଲି ବଳେ ଯାଇ ତାଙ୍କ ଦୁଆରେ ପହଞ୍ଚୁଥିଲେ । ହରିଶଙ୍କରଙ୍କ ମଧୁର ବ୍ୟବହାରରେ ମୁଗ୍ଧ ହୋଇ ତାଙ୍କର ଶତ୍ରୁ ମଧ୍ୟ କ୍ରମେ ମିତ୍ର ପାଲଟିଲେ ।

ସ୍କୁଲଟିକୁ ହରିଶଙ୍କର ପିଲମାନଙ୍କ ପାଇଁ ଅତି ଲୋଭନୀୟ ଓ ଆକର୍ଷଣୀୟ କରିଥାଆନ୍ତି । ସୁନ୍ଦର ସୁନ୍ଦର ଫୁଲ ଫଳରେ ଲଦିହୋଇ ପଡ଼ିଥାଏ ତରୁଲତା । ସ୍କୁଲହତାକୁ ଲଗି ଗ୍ଛୋଟ ଗ୍ଛୋଟ ନଣ୍ଡନାଳରେ କଳକଳ ହୋଇ ପାଣି ବହିଯାଉଥାଏ । ହରିଶଙ୍କର ପଥରଗୁଡ଼ାଏ ଗଦାଗଦା କରି ସଜାଇ ତା ଉପରେ ନାନା ପ୍ରକାର ଗଛଲତା ଏପରି ଲଗାଇ ଦେଇଥାନ୍ତି ଯେ, ସେଗୁଡ଼ିକ ସତକୁ ସତ ପାହାଡ଼ ପରି ଦିଶୁଥାଏ । ଟିକଟିକ ଘରଚଟିଆ, ବଣି ପ୍ରଭୃତି ଚଢ଼େଇ, ପ୍ରଜାପତି, ବେଙ୍ଗ, ଝିଣ୍ଟିକା, ସାଧବବୋହୂ ପ୍ରଭୃତି ବଗିଗ୍ଭଟିରେ ବସାବାନ୍ଧି ରହିଥାଆନ୍ତି । ସେମାନଙ୍କର ଖେଳାଗ୍ଭଲି ଦେଖି, ଆଉ କାକଳି ଶୁଣି ପିଲମାନଙ୍କୁ ଲଗେ ସତେ ଯେପରି ସ୍ୱପ୍ନରାଜ୍ୟରେ ବୁଲୁଛନ୍ତି ସେମାନେ ।

ଯେଉଁ ପିଲମାନେ ବେଶି ଦିନ ଘରେ ରହିଯାନ୍ତି ସେମାନେ ମାତୃହରା ବତ୍ସ ପରି ବିଳାପ କରନ୍ତି । ନିଜ ନିଜର ଘରଦ୍ୱାର ସେମାନଙ୍କୁ

ବନ୍ଧନ ପରି ଲଗେ । ସେମାନେ ସ୍କୁଲକୁ ଫେରି ଆସିଲେ ହଜିଲା ଧନକୁ ଖୋଜି ପାଇଲା ପରି ହରିଶଙ୍କର ଆନନ୍ଦ ଅନୁଭବ କରନ୍ତି । ସେମାନଙ୍କୁ ଆଦରରେ ଧରି ପକାଇ ସେ ପଚାରନ୍ତି, "କରେ ପିଲେ ! ତୁମେ ସବୁ ଏତେ ଦିନଯାଏ ଘରେ କାହିଁକି ରହିଗଲ ?"

ପିଲାମାନଙ୍କ ମଧ୍ୟରୁ ଅନେକ କାନ୍ଦି କାନ୍ଦି ହୋଇ କହି ପକାନ୍ତି, "ଗୁରୁଜୀ, ବାପା ମନା କଲେ । କହିଲେ, ସ୍କୁଲକୁ ତୁମେ ଯିବନାହିଁ ।"

କିଏ କହିଲା, "ଆମେ ସ୍କୁଲ ଯିବାକୁ ଲାଗିଲାରୁ ଅଜା ଆମକୁ ମାଡ଼ ଦେବାକୁ କହିଲେ ।" ଆଉ କିଏ କହିଲା, "ମୁଁ ଏଠାକୁ ଆସିବାକୁ କହିବାରୁ ଭାଇ ପାଟି କଲେ ।"

ହରିଶଙ୍କର କହିଲେ, "ମୁଁ ଭାରି ଖୁସି ଯେ ତୁମେ ସବୁ ତୁମର ସ୍କୁଲକୁ ଭୁଲିନାହଁ । ଏତେ ବାଧା ସତ୍ତ୍ୱେ ତୁମେ ସବୁ ଏଠାକୁ ଧାଇଁ ଆସିଲ । ତୁମେ ମୋର ସୁନା ପିଲା । ତୁମେ ମୋର ଗଉରବ । ମନଦେଇ ପାଠ ପଢ଼ିବ । ଭଲ ମଣିଷ ହୋଇ ଦେଶର ନାଁ ରଖିବ ।"

ସେଦିନ ହରିଶଙ୍କରଙ୍କ ଆଖିରେ ଆନନ୍ଦର ଲୁହ ଜକାଇ ଆସିଥିଲା । ସେ ବୁଝିଲେ ଯେ ପିଲାମାନଙ୍କର ଆଗ୍ରହ ବଡ଼ମାନଙ୍କର ଅହମିକାକୁ ପରାସ୍ତ କରିଦେଇଛି ।

କୁଳୀନ ସମ୍ପ୍ରଦାୟ ଆପଣାର ଭୁଲ ବୁଝିଲେ । ହରିଶଙ୍କରଙ୍କ ଶିକ୍ଷାଦୀକ୍ଷା ଫଳରେ ସମସ୍ତେ ନିଜ ନିଜ ଭିତରେ ଭେଦଭାବ ଭୁଲି ଭାଇ ଭାଇ ପରି ଚଳିଲେ । ସମସ୍ତେ ଈଶ୍ୱରଙ୍କ ସନ୍ତାନ ବୋଲି ବୁଝିଲେ । ଅଚ୍ଛୁଆଁ ବର୍ଗର ମଣିଷର ମନଗଢ଼ା କଥା । ଏହିସବୁ ଶାନ୍ତିମୈତ୍ରୀର ସେତୁବନ୍ଧନ ମୂଳରେ ରହିଲେ ହରିଶଙ୍କର । ସମସ୍ତଙ୍କ ଦୃଷ୍ଟିରେ ଚଳନ୍ତି ଦେବତା, ଯେ ସମସ୍ତଙ୍କର ସୁଖଦୁଃଖରେ ଭାଗୀ ହୁଅନ୍ତି, ପଥ ଭୁଲିଲାବେଳେ ପାଠ ଶିକ୍ଷା କରନ୍ତି ଏବଂ ସମାଜର କଲ୍ୟାଣ ନିରନ୍ତର କାମନା କରନ୍ତି ।

ଏହିସବୁ ଘଟଣା ଗୋଟିକ ପରେ ଗୋଟିଏ ମନେ ପଡ଼ିଯିବା ସଙ୍ଗେ ସଙ୍ଗେ ରାମପ୍ରସାଦଙ୍କ ଆଗରେ ଆଜି ନିଜର ଅତି ଆପଣାର ଅତୀତଟା ଯେପରି ମୂର୍ତ୍ତିମନ୍ତ ହୋଇ ପଡ଼ୁଛି । ତିରିଶ ବର୍ଷ ତଳେ ଯେଉଁ 'ଅନ୍ଧାର ମଣି' ସ୍କୁଲଟି ଅଜ୍ଞାନର ନିବିଡ଼ ଅନ୍ଧକାର ଭିତରେ ମଣିଟିଏ ପରି ଝଟକୁଥିଲା,

ଆଜି ସେ ପ୍ରକୃତରେ ଅଜ୍ଞ ମାନବ ସମାଜ ମଧ୍ୟରେ ଶତ ମଣିର ସନ୍ଧାନ ଦେଇଛନ୍ତି । ହରିଶଙ୍କରଙ୍କ ଅକ୍ଳାନ୍ତ ଉଦ୍ୟମରେ ପ୍ରାଥମିକ ସ୍କୁଲଟି ଆଜି ମହାବିଦ୍ୟାଳୟରେ ପରିଣତ ହୋଇଛି । ନିଜେ ରାମପ୍ରସାଦ ଗୋଟିଏ ଦରିଦ୍ର ନିରକ୍ଷର ହରିଜନ ପରିବାରର ଏକ ଅରକ୍ଷ ସନ୍ତାନ । ତାଙ୍କର ପିତାମାତା ନିଃସମ୍ବଳ ଥିବାରୁ ତାଙ୍କୁ ଅଧିକ ପଢ଼ାଇବାର ଆଶା ଛାଡ଼ି ଦେଇଥିଲେ । କିନ୍ତୁ ଏକମାତ୍ର ହରିଶଙ୍କରଙ୍କ ସାହାଯ୍ୟ ଓ ଉତ୍ସାହ ଯୋଗୁଁ ସେ ଉଚ୍ଚଶିକ୍ଷା ଲାଭ କରିବାରେ ସକ୍ଷମ ହୋଇଥିଲେ । ଅଗ୍ରବର ଅତଳ ଅବସ୍ଥାରୁ ଉନ୍ନୀତ ହୋଇ ସେ ଆଜି ପ୍ରାଚୁର୍ଯ୍ୟର ପ୍ରାସାଦ ମଧ୍ୟରେ ବାସ କରୁଛନ୍ତି । ଆଧୁନିକ ସଭ୍ୟ ସମାଜର ସମସ୍ତ ମାନସମ୍ଭ୍ରମ ଓ ସୁଖ-ସ୍ୱାଚ୍ଛନ୍ଦ୍ୟରେ ସେ ଆଜି ଆତଯାତ ।

କିନ୍ତୁ ଏହି ବିଳାସବ୍ୟସନକୁ ରାମପ୍ରସାଦଙ୍କ ମନ ଆଜି ଶତ ଧିକ୍କାର କରିଉଠୁଛି । କି ମୂଲ୍ୟ ଅଛି ଏସବୁ ବୃଥା ଆଡ଼ମ୍ବର ଓ ଅଯଥା ଅହମିକାରେ । ଯେଉଁ ପିତାମାତା ରାମପ୍ରସାଦଙ୍କ ସାଧନାରେ ଶୁଭେଚ୍ଛା କାମନା କରିବା ସଙ୍ଗେ ସଙ୍ଗେ ନିଜର ସୁଖ ସ୍ୱପ୍ନ ଦେଖିଥିଲେ, ସେମାନେ ତାଙ୍କର ସିଦ୍ଧିଲାଭ ପର୍ଯ୍ୟନ୍ତ ଅପେକ୍ଷା କରିପାରିଲେ ନାହିଁ । ଅବେଳାରେ ଜଣକ ପରେ ଜଣେ ବାଟ କାଟିଲେ । କେହି ତାର ରୋଜଗାର ଟିକିଏ ଭୋଗ କରିପାରିଲେ ନାହିଁ । ମାତ୍ର ସେମାନେ କହିଥିଲେ, "ଜାଣିଲୁ ରାମ, ହରିମାଷ୍ଟ୍ରେ ହେଉଛନ୍ତି ତୋର ପ୍ରକୃତ ବାପ ମା, ଆମେ କ'ଣ ? ତୋର ଆମେ କ'ଣ ବା କରିଚୁ ? ତାଙ୍କର ଋଣ ଶୁଝିବାକୁ ତୁ ଚେଷ୍ଟା କରିବୁ । ଭୁଲିବୁ ନାହିଁ ।"

କର୍ତ୍ତବ୍ୟ ଅନୁରୋଧରେ ରାମପ୍ରସାଦ ଆଜଯାଏ ଦୂରରେ ରହି ପିତାମାତାଙ୍କର ଏହି ସସ୍ନେହ ନିର୍ଦ୍ଦେଶ ଓ ନିଜ ବିବେକର ସ୍ମରଣିକାକୁ ପ୍ରାୟ ଭୁଲି ଯାଇଥିଲେ । କିନ୍ତୁ ସେ ଯେତେବେଳେ ନିକଟକୁ ଫେରି ଆସିଲେ, ଆଶା କରିଥିଲେ ଗୁରୁଦେବଙ୍କର କିଛି ସେବା କରିବେ । ମାତ୍ର ଆଜିର ଏ ଛୋଟ ଘଟଣାଟି ସୂଚାଇ ଦେଲା ଯେ, ସେ ଏହା କରିବାକୁ ସମ୍ଭବତଃ ଆଦୌ ସୁଯୋଗ ପାଇବେ ନାହିଁ । ସେ ଭାବିଲେ, ପ୍ରକୃତରେ ଯେ ମହାନ୍ କର୍ମୀ ବା ସମାଜର ସାଧୁ ସେବକ ତାଙ୍କର ସେବା କରିବା ସାଧାରଣ ବ୍ୟକ୍ତିପକ୍ଷେ ଅସମ୍ଭବ । ସେ କର୍ମୀ ଅନ୍ୟଠାରୁ କୌଣସି ପ୍ରତି-



ଉପକାର ଆଶା କରନ୍ତି ନାହିଁ । ସେ ନିଷ୍କାମ ଭାବରେ ପରାର୍ଥରେ କର୍ମ କରିଯାନ୍ତି । ତେଣୁ ସମାଜ ହିଁ ତାଙ୍କ ପାଖେ ଚିରଋଣୀ ହୋଇ ରହିଯାଏ ।

ଆଦର୍ଶ ଶିକ୍ଷକ ଗୁରୁଦେବ ହରିଶଙ୍କରଙ୍କ ନିକଟରେ ରାମପ୍ରସାଦଙ୍କ ମସ୍ତକ ସ୍ୱତଃ ଅନାବିଳ ଭକ୍ତିଭାବରେ ଅବନତ ହୋଇଯାଉଛି । ରାମ-ପ୍ରସାଦଙ୍କ ଲୁହଭରା ଆଖି ପଡ଼ିଲା ତାଙ୍କ ଆଗ କାନ୍ଥରେ ଝୁଲୁଥିବା ବାପୁଜୀଙ୍କର କଲ୍ୟାଣମୟ ପ୍ରତିମୂର୍ତ୍ତି ଉପରେ । ତାରି ଭିତରୁ ସତେ ଯେପରି ହରିଶଙ୍କରଙ୍କର ଉଜ୍ଜ୍ୱଳ ଓ ଜୀବନ୍ତ ରୂପଟିଏ ଝଲସି ଉଠୁଛି । ସେଇଆଡ଼େ ରାମପ୍ରସାଦ ମନ୍ତ୍ରମୁଗ୍ଧ ଭାବରେ ପ୍ରଣତି ଜଣାଇଲେ ।

# ଘର ବାହୁଡ଼ା

**ଅଧ୍ୟାପିକା ଶାନ୍ତଲତା ମହାପାତ୍ର**

କଟେଜ ଯିବା ବାଟରେ ବାଳକା ହାଇସ୍କୁଲ ସାମନାରେ କେତେଜଣ ଲୋକଙ୍କୁ ଗଛ ଛାଇରେ ଓ ଛତା ମୁଣ୍ଡାଇ ବସିଥିବାର ଦେଖିଲେ ସନାତନ । ସ୍କୁଲ ହତା ପାଚେରି ପାଖରେ ଓ ଗେଟ୍ ଆଗରେ କେତେଟା ଟୋକା ଠିଆ ହୋଇଥିଲେ ଓ ଡାକବାଜ ଯନ୍ତ୍ରରେ କ'ଣ କହୁଥିବାର ଶୁଣାଯାଉଥିଲା । ସେମାନେ ଖୁବ୍ ବ୍ୟସ୍ତ ଓ ତତ୍ପର ମନେ-ହେଉଥିଲେ । ଦୁଇଜଣ କନେଷ୍ଟବଳ ମଧ୍ୟ ବାଡ଼ି ଖଣ୍ଡେ ଖଣ୍ଡେ ଧରି ସେଠି ନସର ପସର ହେଉଥିଲେ । ପିଲା କେତେଟା ତାଙ୍କୁ ମାମୁ ମାମୁ ଡାକି, ତାଙ୍କ ଉପରକୁ ଗୋଡ଼ ଫିଙ୍ଗୁଥିଲେ । ସମସ୍ତ ସକାଳ ସାଢ଼େ ଆଠଟା ହେବ ପ୍ରାୟ । ସନାତନଙ୍କୁ ବୋଧହେଲା ବନ୍ଦୋବସ୍ତ କ୍ୟାମ୍ପ ଆଗରେ ପଞ୍ଝା ନେବାପାଇଁ ଲୋକମାନେ ଅପେକ୍ଷା କରିଛନ୍ତି ବୋଧହୁଏ କମ୍ବା ସ୍କୁଲ ହତା ଭିତରେ ବାଜି ଖେଳ ହେଉଛି । କିନ୍ତୁ ସନାତନଙ୍କ କାନରେ ବାଜିଲା, 'ପ୍ରଥମ ପାନିପଥ ଯୁଦ୍ଧ ୧୫୨୬ ଖ୍ରୀ.ରେ ହୋଇଥିଲା । ୧୮୫୭ ଖ୍ରୀଷ୍ଟାବ୍ଦରେ ସିପାହୀ ବିଦ୍ରୋହର ନେତୃତ୍ୱ ନେଇଥିଲେ ଝାନ୍‌ସୀ ରାଣୀ ଲକ୍ଷ୍ମୀବାଈ ।' ଶୀଘ୍ର ଶୀଘ୍ର ଲେଖ, 'ଖ୍ରୀ. ପୂ. ୨୬୧ରେ ଅଶୋକ କଳିଙ୍ଗ ଆକ୍ରମଣ କରିଥିଲେ ।' ସନ୍ଦିଗ୍ଧ ଚିତ୍ତରେ ସନାତନ ମନକୁ ମନ କହିଲେ—ଉହୁଁ, ଏଠି ତ ବନ୍ଦୋବସ୍ତ କ୍ୟାମ୍ପ ବସିନାହିଁ କି ବାଜି ଖେଳ ହଉନାହିଁ । ତେବେ···'ଏଠି କ'ଣ ହଉଚି କରେ ?' ରିକ୍‌ସାବାଲା ଉଦ୍ଦେଶ୍ୟରେ ପଚାରିଲେ ।

ଆଜ୍ଞା ! ମ୍ୟାଟ୍ରିକ୍ ପରୀକ୍ଷା ଚାଲିଛି ପରା ! ପିଲାଙ୍କୁ କପି ଦିଆ-ଯାଉଛି ।

ଓ···ସ୍ୱଗତୋକ୍ତି କରୁଥିଲେ ସନାତନ । ମୁଣ୍ଡରେ ହାତ ମାରି ଦୀର୍ଘଶ୍ୱାସ ଛାଡ଼ିଲେ । ବହୁ ଭାବି, ସେ ନିଶ୍ଚିତ ହେଲେ ଯେ, ଗଛ ଛାଇରେ ଓ ଛତା ମୁଣ୍ଡେଇ ବସିଥିବା ସେହି ଲୋକମାନେ ପରୀକ୍ଷାର୍ଥୀଙ୍କ ଗାର୍ଡିଆନ୍···

ବାପା ଭାଇ ଇତ୍ୟାଦି ହେବେ ପରା ! ଆଉ ପରୋପକାରରେ ଲାଗିଥିବା ଯୁବକଗୁଡ଼ିକ ସହରର ବେକାର ଅର୍ଦ୍ଧଶିକ୍ଷିତ ଯୁବକ । ହୁଏତ ସେମାନଙ୍କ ଭିତରୁ କେତେଜଣ ମେଟ୍ରିକ୍ ପରୀକ୍ଷା ଦେଇ ନାହାନ୍ତି କମ୍ବା ତିନି ଗୁରି ଥର ପରୀକ୍ଷା ଦେଇ ହତାଶ ହୋଇ ଘରେ ବାପା ଭାଇଙ୍କର ଗଳଗ୍ରହ ହୋଇଛନ୍ତି ।

ମେଟ୍ରିକ୍ ପରୀକ୍ଷା କଥା ମନେପଡ଼ିଲେ ତାଙ୍କ ଦେହ କେମିତି ଝାଳେଇ ଯାଏ । ଏ ବୁଢ଼ା ବୟସରେ ତାଙ୍କ ମନରେ ପରୀକ୍ଷା ଭୂତ ମାଡ଼ିବସେ । ପଚ୍ଚିଶ ବର୍ଷ ପଛକୁ ଦୃଷ୍ଟି ଫେରିଯାଏ । ସେ ସେତେବେଳେ ମେଟ୍ରିକ୍ ପରୀକ୍ଷାର୍ଥୀ । ହେଡମାଷ୍ଟରଙ୍କ ପିଲଙ୍କୁ ଟ୍ୟୁସନ୍ କରି ହାତରେ ଗ୍ରାନ୍ଧ ଖାଉଥିଲେ । ଘରର ଆର୍ଥିକ ଅବସ୍ଥା ଶୋଚନୀୟ । ଭଲ ରେଜଲ୍ଟ ନ ହେଲେ ଗ୍ଭକିରି ଖଣ୍ଡିଏ ମିଳିବା ମୁସ୍କିଲ । କଠୋର ପରିଶ୍ରମ ଫଳରେ ତାଙ୍କର ସ୍ୱାସ୍ଥ୍ୟ ଭାଙ୍ଗି ପଡ଼ିଲା । କେତେ ରାତି ଅନିଦ୍ରା ଓ ଅନାହାରରେ କଟିଛି । ବୋଉର ତାଗିଦାପୂର୍ଣ୍ଣ ଶଠି ମନରେ ଛନକା ସୃଷ୍ଟି କରୁଥିଲା—"ସନିଆରେ, ମନ ଦେଇ ପଢ଼ୁଥିବୁ । ଧ୍ୟାନ ତ ଏ ବର୍ଷ ଭଲ ହେଲା ନାହିଁ । ବାପାଙ୍କ ଦେହ ଭଲ ରହୁନାହିଁ । ତୁ ପାଶ୍ କରି ଗ୍ଭକିରି ଖଣ୍ଡିଏ କଲେ ଦୁଃଖ ଯିବ । ଆଉ ସନକୁ କଉଠି ଦେଖି ଲକ୍ଷ୍ମୀକୁ ଉଠେଇ ଦବା" ଇତ୍ୟାଦି । ହେଡ଼ମାଷ୍ଟର କହନ୍ତି—"ମେଟ୍ରିକ୍ ଫଳ ଉପରେ ସାରା ଜୀବନର ଭବିଷ୍ୟତ ନିର୍ଭର କରୁଛି ।" ତାଙ୍କ ପଢ଼ାସାଥୀ ଶରତକୁ କି ଦୁର୍ବୁଦ୍ଧି ଦେଖାଗଲା କେଜାଣି, ଆଲଜେବ୍ରା ଫର୍ମୁଲାଟେ ସାର୍ଟ ପକେଟରେ ଗଳେଇ ପରୀକ୍ଷା ହଲ୍‌କୁ ନେଇ ଆସିଥିଲା । ଇନ୍‌ଭିଜିଲେଟର୍‌ଙ୍କୁ କେମିତି ବାସ୍ନା ହେଲା ; ସେ ତା ପକେଟ ଅଣ୍ଡାଳି ସେ ଖଣ୍ଡିକ ବାହାର କରି-ନେଲେ ଓ ଦଣ୍ଡସ୍ୱରୂପ ତାକୁ ତିନି ବର୍ଷ ପାଇଁ ପରୀକ୍ଷା ଦେବାରୁ ବଞ୍ଚିତ ହେବାକୁ ପଡ଼ିଥିଲା । ମେଟ୍ରିକ୍ ପରୀକ୍ଷା କଥା କହିଲେ ସେତେବେଳେ ପିଲା, ଶିକ୍ଷକ ଓ ବାପା ମା ଥରହର ହେଉଥିଲେ । ଅନ୍ତତଃ ଦି' ବର୍ଷ ଆଗରୁ ପରୀକ୍ଷା ପ୍ରସ୍ତୁତି ଗ୍ଭଲୁଥିଲା । ଅଜା କହୁଥିଲେ, "ମେଟ୍ରିକ୍ ପରୀକ୍ଷାରେ ଥରକେ ଖସିଗଲେ ଜାଣିବୁ ତୁ ମହାନଦୀ ପାର୍ ହୋଇଯାଇଛୁ ।"

କଲେଜ ହତାରେ ରିକ୍‌ସାରୁ ଓହ୍ଲାଇ ସେ ଦେଖିଲେ, ସବୁଠି ସେଇ ଆଲୋଚନା ହେଉଛି । ଠାଏ ଠାଏ ଲୋକମାନେ ଦଳ ଦଳ ହୋଇ

ଖବରକାଗଜ ପଢ଼ୁଛନ୍ତି ଓ ସେଇ ପରୀକ୍ଷା କଥା କୁହାକୁହି ହଉଛନ୍ତି । ବିଭିନ୍ନ ପରୀକ୍ଷା କେନ୍ଦ୍ରରେ ପ୍ରଚୁର କପି ଯୋଗାଯାଉଛି ଓ ଡାକବାଜ ଯନ୍ତ୍ରରେ ଉତ୍ତର ଡାକି ଦିଆଯାଉଛି । ବାପା ଭାଇ ବା ଗାର୍ଡିଆନ୍‌ମାନେ ମଜୁରିଆ ଲଗେଇ ତାଙ୍କ ପିଲଙ୍କୁ କପି ଯୋଗାଇବାର ବ୍ୟବସ୍ଥା କରିଛନ୍ତି । ଯେଉଁ ପରୀକ୍ଷା କେନ୍ଦ୍ରରେ ସୁପରିନ୍‌ଟେଣ୍ଡେଣ୍ଟ କଡ଼ା ଭାବରେ ପରୀକ୍ଷା ପରିଚାଳନା କରୁଛନ୍ତି, ତାଙ୍କ ଉପରେ ମାଡ଼ ହଉଚି ।

ସନାତନଙ୍କର ପୁରାତନ ଛାତ୍ର ଶ୍ରୀହରି ମହାନ୍ତି ଆଉ୍‌ଭୋକେଟ୍ । ସେ ନମସ୍କାର କରି କହିଲେ—ସାର୍ ! ଆପଣଙ୍କ ପୁଅ ପରା ଫୁଲଝର କଲେଜର ଅଧ୍ୟକ୍ଷ ଅଛନ୍ତି ?

ହଁ, କ'ଣ ହେଲା ? ଉଦ୍‌ବିଗ୍ନ ସ୍ୱରରେ ପଚାରିଲେ ।

ଏଇ ଦେଖନ୍ତୁ, ତାଙ୍କ ଉପରେ ମାଡ଼ ହୋଇଛି । ଫୁଲଝର ବେସରକାରୀ କଲେଜର ଅଧ୍ୟକ୍ଷ ଶ୍ରୀ ସନତ୍ ମିଶ୍ର ଷ୍ଟ୍ରିକ୍ଟ ଭାବେ ପରୀକ୍ଷା କଣ୍ଡକ୍ଟ କରୁଥିଲେ । କିନ୍ତୁ କଲେଜର ସେକ୍ରେଟେରୀ କପି କରିବା ପାଇଁ ପିଲଙ୍କୁ ପ୍ରଶ୍ରୟ ଦେବାରୁ ସେ ଏହାର ଘୋର ପ୍ରତିବାଦ କରିଥିଲେ । ଯାହା ଫଳରେ ତାଙ୍କୁ ଏ ଦୁର୍ଦ୍ଦଶା ଭୋଗ କରିବାକୁ ହୋଇଛି । ଶୁଣାଯାଉଛି ସେକ୍ରେଟେରୀଙ୍କ ପୁଅ ମଧ୍ୟ ଏହି କେନ୍ଦ୍ରରେ ପରୀକ୍ଷା ଦେଉଛି । ସେକ୍ରେଟେରୀ ମହୋଦୟ ଲଗିପଡ଼ି ପଦ୍ମପୁର ହାଇସ୍କୁଲ ଛାତ୍ରମାନେ ଫୁଲଝର କଲେଜ କେନ୍ଦ୍ରରେ ପରୀକ୍ଷା ଦେବାର ବ୍ୟବସ୍ଥା କରିଥିଲେ ।

ସନାତନ ଦୀର୍ଘଶ୍ୱାସ ଛାଡ଼ିଲେ । ଆଉ ଜଣେ ଲୋକ କହିଲେ, ଶୁଣାଯାଉଛି ପରୀକ୍ଷା ପ୍ରଶ୍ନ ବଜାରରେ ବିକ୍ରୀ ହେଉଛି । କେତେଦୂର ସତ କେଜାଣି ? ରାତି ବାରଟା ପରେ ସ୍କୁଟର, ମଟର ସାଇକେଲରେ ଲୋକେ ବୁଲି ବୁଲି ପ୍ରଶ୍ନ ବିକ୍ରୀ କରୁଛନ୍ତି । ପଚାଶ ଟଙ୍କାଠାରୁ ଦୁଇଟଙ୍କା ମୂଲ୍ୟରେ ପ୍ରଶ୍ନ କିଣିବାକୁ ମିଳୁଛି ।

ଆଉ ଥୋଡ଼େ ଲୋକ ଏକଥା ଶୁଣି ଏ କଳି କାଳକୁ ଦୋଷ ଦେଉଥିଲେ । ମାଳିକାରେ ଅଛି, ଏମିତି ଅଘଟଣ ଘଟିବ । ବୃଦ୍ଧ ମୋହରିର ନରହରିବାବୁ କହିଲେ, ପଁଷଠି ବର୍ଷ ହେଲା । ଜ୍ଞାନ ଉଠିବା ଦିନରୁ ମୁଁ ଏକଥା ଶୁଣି ନ ଥିଲି । କି ଥିଲା ଏ ରାଜ୍ୟ, କି ହେଲାରେ ଆଜ !

ସନାତନଙ୍କ କାନରେ ଏସବୁ ପଶୁ ନ ଥିଲା । ସେ ବିଶ୍ୱାସ ଅବିଶ୍ୱାସର ଦ୍ୱନ୍ଦ୍ୱରେ ପଡ଼ି ଗତ ରାତିର ସବୁ କଥା ମନେ ପକାଉଥିଲେ । ସୁବ୍ରୁ କାଲି ରାତିରେ ମୁହଁ ହାଣ୍ଡି କରି କହିଲା—ଜେଜେ ! ମୋତେ ଖାଲି ପଢ଼ ପଢ଼ କହୁଚ । ପଢ଼ି କି ଲାଭ ? ପିଲାମାନେ ତ ଆଗରୁ ପ୍ରଶ୍ନ ଜାଣି ଯାଉଚନ୍ତି । ଆମେ ଯେତେ ଭଲ ପଢ଼ିଲେ କ'ଣ ପ୍ରଶ୍ନ ଜାଣିଥିବା ପିଲାଙ୍କ-ଠାରୁ ଭଲ କରିବୁ ? ମୁଁ ଆଜି ପରୀକ୍ଷା ଦେବି ନାହିଁ ।

ସନାତନ ତା' କଥାକୁ ହସରେ ଉଡ଼ାଇ ଦେଇ କହିଲେ, ହଉ, ଆମେ ବି ପ୍ରଶ୍ନ ଜାଣିବାକୁ ଚେଷ୍ଟା କରିବା । ପିଲେ କମିତି ଜାଣୁଛନ୍ତି ?

ସବ୍ୟସାଚୀ ଜେଜେଙ୍କ କାନରେ ଚୁପ୍ ଚୁପ୍ କହିଲା, ମାଧିଆର ଦାଦା ଗଦାଧର ପରା ପ୍ରତିଦିନ ରାତି ଅଧରେ ମଟର ସାଇକେଲରେ ବୁଲି ବୁଲି ପ୍ରଶ୍ନ ବଣ୍ଟୀ କରୁଚନ୍ତି ।

ହଉ, ତୁ ପଢ଼ାପଢ଼ି କର । କେଉଁଠୁ ଗୁଲଖଟି କଥା ତୋ ମୁଣ୍ଡରେ କିଏ ପୂରଉଚି ? ଜେଜେ ଗରଗର ହୋଇ କହିଲେ ।

ମୋହରିର ନରହରିବାବୁ କହିଲେ, ଆଗରୁ କହୁଥିଲେ, ମାଛ ଖାଇବ ଇଲଶୀ, ଚାକିରି କରିବ ପୁଲିସ । ଏବେ ଶିକ୍ଷା ବିଭାଗ କର୍ମଚାରୀଙ୍କ ପ୍ରତି ଏ ବାକ୍ୟ ବେଶ୍ ଲାଗୁ ହେବ ।

ସନାତନଙ୍କୁ ଏ ଆକ୍ଷେପୋକ୍ତି ବଡ଼ ବାଧିଲା । ସେ ନିଜେ ଶିକ୍ଷକ ଓ ତାଙ୍କ ପୁଅ ମଧ୍ୟ ଶିକ୍ଷା ବିଭାଗର କର୍ମଚାରୀ, ଫୁଲଝର ବେସରକାରୀ କଲେଜର ଅଧ୍ୟକ୍ଷ । ସେ ନରହରିଙ୍କ ମନ୍ତବ୍ୟର ପ୍ରତିବାଦ କରିବାକୁ ଚାହୁଁଥିଲେ । କିନ୍ତୁ ବର୍ତ୍ତମାନ ପରିପ୍ରେକ୍ଷୀରେ ତାଙ୍କର ମୁହଁ ନାହିଁ କି ନୈତିକ ସାହସ ନାହିଁ । ସେ ବସ୍‌ଷ୍ଟାଣ୍ଡ ଆଡ଼େ ମୁହାଁଇଲେ । କଟକରେ କାମ ଅନ୍ୟ ଦିନକୁ ଥାଉ ।

ସୁବ୍ରୁ ଶୁଣିଥିବା ଗୁଜବ ତାହାହେଲେ ସତ । ତା'ପରି ମେଧାବୀ, ପରିଶ୍ରମୀ କିଶୋର ମନରେ ଏ ଘଟଣା କି ପ୍ରଭାବ ପକାଇବ, ସେ ଭାବୁଥିଲେ । ପାଞ୍ଚ ସାତ ବର୍ଷ ହେଲା ଅନେକ ପରୀକ୍ଷା କେନ୍ଦ୍ରରେ ମେଟ୍ରିକ୍ ପରୀକ୍ଷା ଏକ ପ୍ରହସନରେ ପରିଣତ ହୋଇଛି ବୋଲି ସେ ଶୁଣି ଆସୁଛନ୍ତି । ବସ୍ତିଆ ହାଇସ୍କୁଲ ପରୀକ୍ଷା କେନ୍ଦ୍ରକୁ ସୁପରିନ୍‌ଟେଣ୍ଡେଣ୍ଟ ହୋଇ ଯାଇଥିବା

ତାଙ୍କର ଜନୈକ ଗ୍ରନ୍ଥ ତାର ଉକ୍ତ ଅଭିଜ୍ଞତା ବର୍ଣ୍ଣନା କରୁଥିଲା । ସ୍ଥାନୀୟ ଲୋକମାନେ ଓ ହାଇସ୍କୁଲ ଶିକ୍ଷକମାନେ ପରୀକ୍ଷାରେ ଦୁର୍ନୀତି ଆଚରଣ କରିବା ପାଇଁ ପୂର୍ଣ୍ଣ ପ୍ରଶ୍ରୟ ଦେଉଥିଲେ । ସେ ସୁପରିନ୍‌ଟେଣ୍ଡେଣ୍ଟ ଭାବରେ ତାହାକୁ ନିୟନ୍ତ୍ରଣ କରିବାରୁ ତାଙ୍କ ଜୀବନ ମଧ୍ୟ ବିପନ୍ନ ହୋଇ ପଡ଼ିଥିଲା । ପିଲାଙ୍କ ଗାର୍ଡିଆନ୍‌ମାନେ ତିନି ଚାରି ଜଣ ଲୋକ ଲଗାଇ କପି ଯୋଗାଉଛନ୍ତି । ପ୍ରତି ବର୍ଷ ଖବରକାଗଜରେ ଏ ସମ୍ପର୍କରେ ନାନା ସ୍ଥାନରେ ଘଟୁଥିବା ଦୁର୍ଘଟଣାମାନ ପ୍ରକାଶ ପାଉଛି ।

କିନ୍ତୁ ଶାଗ ପରିବା ପରି ରାସ୍ତାରେ ପ୍ରଶ୍ନ ବିକ୍ରୀ ହେବା କଥା ତାଙ୍କ ମନକୁ ଏବେ ମଧ୍ୟ ପାଉନାହିଁ । ହେଡ଼ମାଷ୍ଟରଙ୍କ କଥା ମନେପଡ଼ୁଛି, ଏ କ'ଣ ଖେଳଘର ହୋଇଛି ? ମେଟ୍ରିକ୍ ପରୀକ୍ଷାର ଫଳାଫଳ ଉପରେ ଧାରା ଜୀବନର ଭବିଷ୍ୟତ ନିର୍ଭର କରୁଛି । ସତର୍କ ନ ହେଲେ ପରିଶ୍ରମ, ନିଷ୍ଠାପରତା ଆଉ ପ୍ରତିଭାର କିଛି ମୂଲ୍ୟ ରହିବ ନାହିଁ ଯେ !

ସ୍ୱାଧୀନତା ପରେ ଅବଶ୍ୟ ଦୁର୍ନୀତି ଆମ ଦେଶରେ ଆମୂଳଚୂଳ ବ୍ୟାପିଛି । ଶେଷରେ ଶିକ୍ଷା ବିଭାଗ ପରି ପବିତ୍ର ଅନୁଷ୍ଠାନ ଓ ଦେଶର ଭବିଷ୍ୟତ ନାଗରିକଙ୍କୁ ମଣିଷ କରିବାର ଗୁରୁଦାୟିତ୍ୱରେ ଥିବା ଶିକ୍ଷକ-ମାନେ ମଧ୍ୟ ଦୁର୍ନୀତିଗ୍ରସ୍ତ ହେଉଛନ୍ତି । ବିଶ୍ୱବିଦ୍ୟାଳୟ ପରୀକ୍ଷାରେ କେତେକ ପରୀକ୍ଷକ ଅର୍ଥ ବିନିମୟରେ ନମ୍ବର ବଢ଼ାଉଚନ୍ତି ବୋଲି ଅଭିଯୋଗ ହେଉଛି । ଟେବୁଲେସନ୍ ପରି ଅତି ଗୋପନୀୟ କାର୍ଯ୍ୟରେ ହେରଫେର ହେଉଛି ବୋଲି ଶୁଣାଯାଉଛି । ତଥାପି ଜନତା ନୀରବ । ସମସ୍ତେ କାନ୍ଦୁଛନ୍ତି, କିନ୍ତୁ କାହାରି ଆଖିରୁ ଲୁହ ବୋହୁନାହିଁ । ଲୋକଚରିତ୍ର ଯେ ଏତେ ନିମ୍ନଗାମୀ ହେବ, କିଏ ଭାବିଥିଲା ?

ହେଇ, ବସ୍ ଆସିଲେ । ଠେଲାପେଲି ସେ ବସ୍‌ରେ ପଶିଲେ । କୋଳାହଳ ଭିତରେ ସେଇ ପରୀକ୍ଷା କଥା ଆଲୋଚନା ହେଉଥିବାର ସେ ଶୁଣିଲେ । ପ୍ରାୟ ସମସ୍ତଙ୍କ ହାତରେ ଖଣ୍ଡେ ଖଣ୍ଡେ ଖବରକାଗଜ । ଫୁଲଝର କଲେଜ ଅଧ୍ୟକ୍ଷଙ୍କ ଉପରେ ମାଡ଼ ଘଟଣା ଓ ସେଣ୍ଟେଟେରୀଙ୍କର କାର୍ଯ୍ୟକଳାପ ପାଠକଙ୍କର ବେଶି ଦୃଷ୍ଟି ଆକର୍ଷଣ କରିଛି ।

ପଛଆଡ଼ୁ କିଏ ଜଣେ କହୁଥିବାର ଶୁଣାଗଲା, କପି ନିୟନ୍ତ୍ରଣ କରିବାରୁ ଅଧ୍ୟକ୍ଷଙ୍କ ଉପରେ ମାଡ଼ ହୋଇଛି ନା ପ୍ରଶ୍ରୟ ଦେବାରୁ···? ବାପ

ପୁଅଙ୍କର ତ ପତ୍ତେ ନାହିଁ । ଚାକିରି କରିବାକୁ ପାଞ୍ଚ ବର୍ଷ ହେଲା ଗଲାଣି ଯେ, ଘରକୁ ଫେରୁନାହିଁ ।

ସନାତନ ପଛକୁ ଫେରି ଚାହିଁଲେ ଚନ୍ଦ୍ରା ମୁହଁ ପରି ଲାଗୁଚ । ଟୋକାଟା ତାଙ୍କ ଗାଁ ପାଖ ତଳଗୋପ ଗାଁର ହେବ ବୋଧହୁଏ । ସନାତନଙ୍କର ନିଃଶ୍ୱାସ ଯେମିତି ରୁଦ୍ଧ ହୋଇ ଆସୁଥିଲା । ତଣ୍ଟି ଶୁଖି ଆସୁଥିଲା । ତାଙ୍କୁ ଦେଖି ସେ ଜାଣି ଜାଣି କହୁଥିଲା ।

ଅଧକ୍ଷ ମହାଶୟ ପୁଣି ରାଷ୍ଟ୍ରପତି ପୁରସ୍କାରପ୍ରାପ୍ତ ଆଦର୍ଶ ଶିକ୍ଷକଙ୍କ ପୁଅ···ହେଁ···ହେଁ···ହେଁ···ସେ ପୈଶାଚିକ ହସରେ ସନାତନ କାନରେ ହାତ ଦେଲେ । ଏଥର ସ୍ପଷ୍ଟ ମନେପଡ଼ିଲା, ଇଏ ତଳଗୋପ ସରପଞ୍ଚ ନଧେଇ ମଲିକ ପୁଅ ; ଚାରି ଥର ମେଟ୍ରିକ୍ ଫେଲ୍ ହୋଇ ମଦ ଦୋକାନ ଦେଇଚି ସହରରେ । ଲୋକେ କହନ୍ତି, ତା ପାଖରୁ ଅନେକ ଫରେନ୍ ମେଡ୍ ଘଣ୍ଟା, ଟେପ୍‌ରେକର୍ଡ୍, କାମେରା ପ୍ରଭୃତି ଜିନିଷ ଶସ୍ତାରେ ମିଳେ । ଇଏ ଗାନ୍ତଅଧିଆ କାରବାର ।

ସନତ୍ ପାଞ୍ଚ ବର୍ଷ ହେଲା ଘରକୁ ଆସୁନାହିଁ ସତ । କିନ୍ତୁ କେଉଁ ପରିସ୍ଥିତିରେ ସେ ଘର ଛାଡ଼ି ଯାଇଛି ଓ ତା ଅନୁପସ୍ଥିତିରେ ସେ କିପରି ମାନସିକ ଯନ୍ତ୍ରଣା ଭୋଗ କରୁଛନ୍ତି ତାହା କ ମର୍ମନ୍ତୁଦ, ପିତାର ହୃଦୟ ନେଇ ପୁଣି ଏ ବୃଦ୍ଧ ବୟସରେ, ସନାତନ ଏକା ଜାଣନ୍ତି ।

ଗଣିତରେ ଏମ୍. ଏ. ପାଶ୍ କରି ସେ ଚାକିରି ଅନ୍ୱେଷଣରେ ବହୁ ଇଣ୍ଟରଭ୍ୟୁ ଦେଇଛି । ଦୁଇ ତିନଟି ପ୍ରାଇଭେଟ୍ କଲେଜରେ ଚାକିରି ପାଇ ବାଧ୍ୟ ହୋଇଛି ପୁଣି ଛାଡ଼ିବାକୁ । ଦୁଇଶହ ତିନଶହ ଟଙ୍କା ଦରମା ତାହା ମଧ୍ୟ ଅନିୟମିତ । ଚୂଲି ଚାଳ ନ ଥିବା ଏମିତି କଲେଜ ସାଇ ଗଳିକନ୍ଦିରେ ଅନେକ ଖୋଲିଲାଣି । ଶିକ୍ଷାର ପ୍ରସାର ନାଁରେ ଏହି ଶିକ୍ଷାନୁଷ୍ଠାନମାନଙ୍କରେ ଯେଉଁ ଲୋ' ଷ୍ଟାଣ୍ଡାର୍ଡର ପିଲାମାନେ ପଢ଼ୁଛନ୍ତି, ପରୀକ୍ଷାରେ ପାଶ୍ କରିବା ପାଇଁ ତାଙ୍କର କପି ବ୍ୟତୀତ ଅନ୍ୟ ଉପାୟ ନାହିଁ । ବିଶ୍ୱବିଦ୍ୟାଳୟ ରେକର୍ଡରୁ ଜଣାଯାଉଛି, ଏହିପରି କେତେକ କଲେଜରେ ପାଶ୍ ସଂଖ୍ୟା ନିଲ୍ ବା ଶତକଡ଼ା ଏକ ବା ଦୁଇ । କଲେଜରେ ଉଚ୍ଚଶିକ୍ଷାପ୍ରାପ୍ତ ଏହିପରି ବହୁ-ସଂଖ୍ୟକ ଯୁବକ କୁଆଡ଼େ ଦେଶରେ ବୈପ୍ଳବିକ ପରିବର୍ତ୍ତନ ଆଣି ପାରିବେ ବୋଲି ନେତୃସ୍ଥାନୀୟ ଦୂରଦ୍ରଷ୍ଟା ବ୍ୟକ୍ତିମାନେ ମତପୋଷଣ କରୁଚନ୍ତି ।

ସମସ୍ତ ତାର ମୁଖ୍ୟ ବଖରକ । ଏହି କଲେଜଗୁଡ଼ିକର କର୍ମକର୍ତ୍ତାମାନେ ଅଧ୍ୟକ୍ଷ ଓ ଅଧ୍ୟାପକଙ୍କ ଉପରେ ନାନା ପ୍ରକାର ରାଜନୈତିକ ଚାପ ପକାଇ ପରିସ୍ଥିତିକୁ ଜଟିଳ କରିଦେଉଛନ୍ତି । ସନତ୍ ସ୍ୱାଧୀନଚେତା ମିତବାଦୀ ଯୁବକ । ସେ ତୈଳମର୍ଦ୍ଦନପୂର୍ବକ ଏହି କର୍ତ୍ତୃପକ୍ଷମାନଙ୍କର ମନୋରଞ୍ଜନ କରିବାକୁ ଅକ୍ଷମ ହୋଇ ଦୁଇ ତିନିଟି କଲେଜରୁ ବିଦାୟ ନେଇ ଆସିଛି ।

ବସି ରହିଲେ ଘର ଚଳିବ କିମିତି ? ମା ମରିଯିବାରୁ ମେଟ୍ରିକ୍ ପାଶ୍ କରିବା ପରେ ପରେ ସନାତନ ସନତ୍‌କୁ ବାହା କରେଇବାକୁ ବାଧ୍ୟ ହୋଇଥିଲେ । ଘରେ ଛ'ପରାଣୀ କୁଟୁମ୍ବ । ପିଲାମାନେ ପଢ଼ିଲେଣି । ସୁବୁ ଏଥର ମେଟ୍ରିକ୍ ଦେଉଛି । ତାଙ୍କର ପେନ୍‌ସନ୍ ଟଙ୍କା ବା କେତେ ? ଧାନ-ଗଣ୍ଡିକ ଜମିରୁ ମିଳୁଛି ବୋଲି ସିନା କଷ୍ଟେମଷ୍ଟେ ଚଳି ଯାଉଛନ୍ତି ।

ଅଗତ୍ୟା ସନତ୍ ଫୁଲଝର କଲେଜରେ ଚାକିରି ପାଇଲା ; ଅବଶ୍ୟ ଏକ ସର୍ତ୍ତରେ । ପାଞ୍ଚ ହଜାର ଟଙ୍କା ତାଙ୍କୁ ଡୋନେସନ୍ ଆକାରରେ ଦେବାକୁ ପଡ଼ିଥିଲା । ବଣ୍ଡରେ ଦସ୍ତଖତ କରିଥିଲା ସନତ୍ । ସରକାରୀ ମଞ୍ଜୁରି ପାଇବା ପର୍ଯ୍ୟନ୍ତ ନିୟମିତ ପାଞ୍ଚଶହ ଟଙ୍କା ବେତନ ପାଇବ, ଚାକିରି ପର୍ମାନେଣ୍ଟ । ଘରକୁ ଆସି ତାଙ୍କ ପାଖରେ ଏ ସର୍ତ୍ତ ବାଢ଼ିବାରେ ସନାତନ ଉତ୍‌କ୍ଷିପ୍ତ ହୋଇ ଉଠିଥିଲେ । କହିଲେ, ଆମର ସେ ଚାକିରି ଲୋଡ଼ା ନାହିଁ, ମାଛ ଧରିବା ପରି ଦର କଷାକଷିରେ ଚାକିରି କରାଯାଏ ନାହିଁ ।

ସନାତନ ମନେ ପକାଉଥିଲେ, କେତେ କଷ୍ଟରେ, ଘର ଖର୍ଚ୍ଚରୁ କାଟି ସେ ସନତ୍ ପାଖକୁ ଟଙ୍କା ପଠାଉଥିଲେ । ଜିନିଷପତ୍ର ଦରଦାମ ବୃଦ୍ଧି ସହିତ ପାଠ ପଢ଼େଇବା ଖର୍ଚ୍ଚ ମଧ୍ୟ ଯଥେଷ୍ଟ ବଢ଼ିଗଲାଣି । ତା'ପର ପର୍ଯ୍ୟାୟରେ ଚାକିରି ପାଇଁ ଦଉଡ଼ା, ଇଣ୍ଟରଭ୍ୟୁ ଦେବା ପାଇଁ ପାଞ୍ଚ ଜାଗାକୁ ଯିବା ଓ ଇଣ୍ଟରଭ୍ୟୁ ପ୍ରସ୍ତୁତି ପାଇଁ ବହିପତ୍ର, ଜର୍ଣ୍ଣାଲ୍ ଇତ୍ୟାଦି କିଣାରେ ଯେତେ ଖର୍ଚ୍ଚ ହେଉଛି । ପୁଣି ଚାକିରି କରିବା ପାଇଁ ଡୋନେସନ୍ ପାଞ୍ଚ ହଜାର ଦେବାକୁ ପଡ଼ିବ । ଅନୁଷ୍ଠାନ, କ୍ଲବ୍, ସ୍କୁଲ କଲେଜ, ପୂଜାପାର୍ବଣ, ରିଲିଫ୍ ନାଁରେ ଚାନ୍ଦା ସଂଗ୍ରହ କରି ନେତାଗିରି କରିବା ଓ ଉଦର ପରିପୁଷ୍ଟି କରିବା କେତେ ଲୋକଙ୍କର ଏକ ଜୀବିକାରେ ପରିଣତ ହେଲଣି ।

ଏକକାଳୀନ ଏତେ ଟଙ୍କା ବା କାହିଁ ? ଜମି ଦୁ'ଖଣ୍ଡରୁ ଟାଣା-ଟୁଣରେ ଭାତ ମୁଠାକ ଚାଲି ଯାଉଛି । ସେତକ ବିକ୍ରୀ କରି ବା ବନ୍ଧକ ଦେଇ ନ'ପରାଣୀ କୁଟୁମ୍ବକୁ ଦୁର୍ଭିକ୍ଷ ମୁହଁରେ ଠେଲି ଦେବେ ? ସନାତନଙ୍କ ମୁହଁରେ ସେଇ ବଜ୍ରଗମ୍ଭୀର ବାଣୀ—ମୁଁ ତୋତେ ଏ ସର୍ତ୍ତମୂଳକ ଚାକିରିରେ ଜଏନ୍ କରିବାକୁ ଦେବି ନାହିଁ । ବର୍ତ୍ତମାନ ପରିସ୍ଥିତିରେ ତୋ ପରି ଉଚ୍ଚଶିକ୍ଷିତ ଯୁବକକୁ ମୁଁ ପୋଷିବାକୁ ପ୍ରସ୍ତୁତ ଅଛି । କିନ୍ତୁ ଏ ସ୍ୱାନ ସର୍ତ୍ତମୂଳକ ଚାକିରି ତୁ କରିପାରିବୁ ନାହିଁ ।

ସେଦିନ ରାତିରେ ତାଙ୍କ ଅଜାଣତରେ ସନତ୍ ଘର ଛାଡ଼ି ଗଲା ସେ, ଆଉ ଫେରି ନାହିଁ । କିନ୍ତୁ ବୋହୂ ରମା ଦେହରେ ବସ୍ତ୍ର ଖିଏ ବି ନାହିଁ । ସନାତନଙ୍କ ଆଖି ଛଳ ଛଳ ହେଲା । ଏ ମହର୍ଗ ଯୁଗରେ ମୁଦି କିଛିଟିଏ ବୋହୂକୁ ଦେଇପାରି ନାହାନ୍ତି । ପୁଅ ବେକାର । ଅଥଚ ବାପଘରର ସମସ୍ତ ଗହଣା ସେ ସ୍ୱେଚ୍ଛାରେ ସ୍ୱାମୀ ହାତରେ ଅର୍ପଣ କରିଦେଲେ । ସନାତନ କ୍ରୋଧ, ଲଜ୍ଜା ଓ ଦୁଃଖରେ ମ୍ରିୟମାଣ ହୋଇ ସନତ୍‌କୁ ଚିଠି ଲେଖିଥିଲେ, ତୋ ପରି ଡାକୁ ପୁଅର ମୁହଁ ଚାହିଁବି ନାହିଁ ।

ଏ ଭିତରେ ପାଞ୍ଚ ବର୍ଷ ବିତିଗଲାଣି, ସନତ୍ ଆତ୍ମାଭିମାନୀ । ମାସକୁ ମାସ ଘରକୁ ଟଙ୍କା ପଠାଉଛି, କିନ୍ତୁ ଆସୁନାହିଁ । ସେ ଯିବେ, ତାକୁ କହିବେ, ଏ ବୁଢ଼ା ବାପା ଉପରେ ଅଭିମାନ କରି ତୁ ଘରକୁ ଯାଉନାହୁଁ ! ଚାଲ—ଆମର ଏ ଚାକିରି ଲୋଡ଼ା ନାହିଁ । କିନ୍ତୁ ସେ ଯେ ଆହତ ।

...କ୍ଷେତପୁର—ବସ୍ ରହିଲା । ସନାତନ ଓହ୍ଲାଇଲେ । ଗାଁକୁ ଯିବାକୁ ଗୋଡ଼ ଚଳୁନାହିଁ, ଖବରକାଗଜରେ ପ୍ରକାଶିତ ସନତ୍ ମାଡ଼ ଖାଇବା ଖବର ସମସ୍ତେ ଜାଣି ସାରିବେଣି । ଅର୍ଥକୁ ଅନର୍ଥ କରି, ତିଳକୁ ତାଳ କରି ଅପହଣୀ ଭାଇ ଭଗାରିଏ ରମାକୁ କେତେ କଥା କହୁଥିବେ । ତାଙ୍କୁ ଦେଖି ବି—

ଘର ଦୁଆର ମୁହଁରେ ନ ପହଞ୍ଚୁଣୁ ପିଲାଏ ଦଉଡ଼ି ଆସି କହିଲେ, ଜେଜେ ! ବାପା ଆସିଛନ୍ତି ।

ସନତ୍ ତାଙ୍କୁ ପ୍ରଣାମ କଲା । ଉପୁଗ୍ରତ କଣ୍ଠରେ ଅଭିଯୁକ୍ତ ଆସାମୀ ପରି କହିଲା, ବାପା ମୋତେ କ୍ଷମା କର । ଅନ୍ୟାୟ ବିରୁଦ୍ଧରେ ପ୍ରତିବାଦ

କରି ମୁଁ ଆହତ ହୋଇଛୁ ପଛେ ଅନ୍ୟାୟକୁ ପ୍ରଶ୍ରୟ ଦେଇନାହିଁ । ଶେଷରେ ଗ୍ରକରି ଛାଡ଼ି ଗ୍ଲଲ ଆସିବା ଉଚିତ ମନେକଲି, କିନ୍ତୁ ହୀନମନା ସୁବିଧାଖୋର ଲୋକଙ୍କ ପାଖରେ ମୁଣ୍ଡ ନୋଇଁଲି ନାହିଁ ।

ବାପା ସନତ୍ରର ପିଠି ଥାପୁଡ଼େଇ ହସି ହସି କହିଲେ, ଏତେ ଟଙ୍କା ଖର୍ଚ୍ଚ କରି ତୋତେ ପାଠ ପଢ଼ାଇବା ବ୍ୟର୍ଥ ହୋଇନାହିଁ । ତୁ ଠିକ୍ କରିଛୁ ।

ରମା ଓ ପିଲାମାନେ ଦୂରରେ ଠିଆ ହୋଇ ହସୁଥିଲେ ।

# ଯୁଗ ବଦଳିଛି

ଅଧ୍ୟାପକ ଜଗନ୍ନାଥ ମହାନ୍ତି

ତିରିଶ ବର୍ଷ ତଳର କଥା । ଏବେ ବି ସବୁରି ମନରେ ସବୁଜ ଓ ସତେଜ ହୋଇ ରହିଛି । ସମସ୍ତଙ୍କ ତୁଣ୍ଡରେ ସେଇ କଥା । ଢେଙ୍କିଶାଳରୁ ଢେଙ୍କାନାଳ ଯାଏ, ଗାଧୁଆ ତୁଠଠାରୁ ପରିବା ହାଟ ଯାଏ ସେହି ଗୋଟିଏ କଥା ଅସୁମାରି ଡେଣା ମେଲି ଉଡ଼ି ବୁଲୁଥିଲା । ଢୋଲ ବାଇଦ କୋଶେ, ତୁଣ୍ଡ ବାଇଦ ସହସ୍ର କୋଶ । ସେଇ ଗୋଟିକ କଥା ସବୁରି ତୁଣ୍ଡରେ ନାନା ରଙ୍ଗ ନେଇ ପ୍ରକାଶ ପାଉଥିଲା ।

ଏବେ ସେପରି କଥା ଅତି ସାଧାରଣ, ଅତି ମାମୁଲି । ଆଜିର ନାରୀ ଘରର ଚାରିକାନ୍ଥ ମଧ୍ୟରେ ବନ୍ଦିନୀ ନୁହେଁ କିମ୍ବା ତା'ର ପାଠ ଚୁଲି-ମୁଣ୍ଡିକୁ ନୁହେଁ । ସେ ଆଜି ସମାଜ ଓ ସରକାର, ଜ୍ଞାନ ଓ ବିଜ୍ଞାନ, ଶିଳ୍ପ ଓ ସାହିତ୍ୟ ପ୍ରଭୃତି ନାନା ବିଭାଗ ଓ ବିଭବରେ ମହିମାନ୍ୱିତ ସ୍ଥାନ ମଣ୍ଡନ କରୁଛି, ସକ୍ରିୟ ଅଂଶ ଗ୍ରହଣ କରୁଛି । ପୁରୁଷ ସହିତ ନାରୀ ଆଜି ସମାନ ସୁଯୋଗ ସୁବିଧା ଦାବୀ କରୁଛି ।

ସେତେବେଳେ ଏକଥା ଥିଲା ସ୍ୱପ୍ନର ଅତୀତ, କଳ୍ପନାର ବହିର୍ଭୂତ । ସରଳା ଥିଲେ କୁଳବଧୂ । ସମାଜର ନିବିଡ଼ ବନ୍ଧନ ଭିତରେ ସେ ଥିଲେ ଆବଦ୍ଧ । ଭାଗ୍ୟ ବିପର୍ଯ୍ୟୟରେ ଯେତେବେଳେ ତାଙ୍କର ସ୍ୱାମୀ ଭରଣପୋଷଣରେ ଉପାୟ ନ ପାଇ ଚାକିରି ଅନ୍ୱେଷଣରେ ବିଦେଶ ଯାତ୍ରା କଲେ, ସେତେବେଳେ ତାଙ୍କର ହୃଦୟ ଗୁମୁରି ଉଠିଥିଲା । ତାଙ୍କ ମନରେ ଉଠିଥିଲା ଅସରନ୍ତି ଝଡ଼ । ଆଖିରୁ ଝରିଥିଲା ଲୁହର ଶ୍ରାବଣ ଧାରା ।

ଶତଚେଷ୍ଟା ସତ୍ତ୍ୱେ ସେ ତାଙ୍କର ସ୍ୱାମୀଙ୍କୁ ଅଟକାଇ ପାରି ନ ଥିଲେ । ପରିବାରର ଅସୀମ ଅଭାବ ଅସୁବିଧା ସ୍ୱାମୀଙ୍କର ପୌରୁଷରେ ଆଘାତ ଦେଇଥିଲା । ସେ ଶୀଘ୍ର ନିଜର ଭିଟାମାଟିକୁ ଫେରିବେ ବୋଲି



କିନ୍ତୁ କଲିକତା କ କାଳମାଟିକୁ ବାଟ କାଟିଲେ ଯେ ଆଉ ଫେରିଲେ ନାହିଁ । ଦିନ ପରେ ଦିନ, ମାସ ପରେ ମାସ, ବର୍ଷ ପରେ ବର୍ଷ ବିତିଲା । ଆଖି ପାଣି ଆଖିରେ ମଲା । ଆଶା ନିରାଶାରେ ବୁଡ଼ିଲା । ସତ ହେଲା ସ୍ୱପ୍ନ । ଜୁଆରରେ ପଡ଼ିଲା ଭଟ୍ଟା ।

ସରଳା ଅବଳା । କିନ୍ତୁ ମନରେ ତାଙ୍କର ଅତୁଟ ବଳ । ଅଦମ୍ୟ ସାହସ । ଜେଜେମାଙ୍କର ଶତ ବାଧା ବାରଣ ସତ୍ତ୍ୱେ ସେ ଗାଁ ପାଖ ମାଇନର ସ୍କୁଲରେ ପାଠ ପଢ଼ିଥିଲେ । ବୁଢ଼ୀମା ସଦାବେଳେ କହୁଥିଲେ, "ବାହାହେଇ ପର ଘରେ ତ ଗଧ ଖଟଣି ଖଟିବ, ସ୍ୱାମୀ, ଶ୍ୱଶୁର, ଶାଶୁ, ନଣନ୍ଦଙ୍କ ସେବା କରୁ କରୁ ନିଃଶ୍ୱାସ ମାରିବାକୁ ତର ନ ଥିବ । ଆଉ ଏ ପାଠ ପଢ଼ି କି ଲାଭ ? କୋଉ ଚାକିରିବାକିରି କରିବ ଯେ ! ଏଡ଼େ ବଡ଼ ଝିଅଟେ ହେଲାଣି, ଟୋକାଦଳଙ୍କ ସାଥିରେ ଏତେ ବାଟ ଯିବ ? ହେଁ ହେଁ ଫେଁ ଫେଁ ହେବ ? ନ ହେଲା ସେ ପାଠପଢ଼ା । କୋଉ ଆମକୁ ପୋଷିବ କି ?"

ସରଳାର ବାପା ଆଜକାଲିକା ଲୋକ ନ ହେଲେ ବି ପଛୁଆ ନ ଥିଲେ । ତାଙ୍କର ଆଗପଛ ବିଚାର ଥିଲା । ଯୁଗର ଆହ୍ୱାନ ଶୁଣି ସେ ଅନୁସାରେ କାମ କରିବାକୁ ସେ ପଛାଉ ନ ଥିଲେ । ସେ କହୁଥିଲେ, "ଝିଅ ଜନମ ପର ଘରକୁ ସତ । ମାତ୍ର ବାହାଘର ପରେ ସେହି ପର ଘର

ହୁଏ ନଜର, ଅଡ ଆପଣାର । ଲେଖାପଢ଼ା କରିଥିଲେ, ଦୁନିଆଁର ଭଲମନ୍ଦ ଜାଣିଥିଲେ, ସେ ତାର ସଂସାରକୁ ସୁନା କରିପାରେ, ନ ହେଲେ ଚୂନା କରିପାରେ । ଏଇଠି କୁହାଯାଏ, ଦୁହିତା ଦୁଇ କୁଳକୁ ହିତା, ନ ହେଲେ ଦୁଇ କୁଳକୁ ପିତା । ଝିଅଟି ସୁଗୃହିଣୀ ହେଲେ କେବଳ ଗୋଟିଏ କୁଳର ମଙ୍ଗଳ ହୁଏନାହିଁ, ଦୁଇଟି କୁଳର ଗୌରବ ବଢ଼େ । ଘରସଂସାରକୁ ଠିକ୍ କରି ଚଳାଇ ନ ପାରିଲେ ଦୁଇ କୁଳର ଦୁର୍ନାମ ଅପଯଶ ଘୋଟି ଆସେ । ସରଳା ଗୋଟିଏ ବୋଲି ଝିଅ । ସେ ଭଲ ପାଠ ପଢ଼ୁଛି । ଗାଁ ସ୍କୁଲରେ ମାଇନରଟା ହେଲେ ପଢ଼ିଯାଉ ।”

ସେଇଆ ହୋଇଥିଲା । ସରଳା ମାଇନର ପାସ୍ କରିଥିଲା । ଜେଜେମା ସରଳାଙ୍କର ବାହାଘର ଦେଖି ଆଖି ବୁଜିଲେ । ବାହାଘର ହେବାର ତିନି ଚାରି ବର୍ଷ ଭିତରେ ବାପା ମା ବି ସେପୁରକୁ ଗଲେ । କଥାରେ ଅଛି, ବାପଘରର ବାସି ତୋରାଣିକୁ ବି ଝିଅର ଲୋଭ । କିନ୍ତୁ ବାପମାଙ୍କର ମୃତ୍ୟୁ ପରେ ସେ ସେପାଖରୁ ସବୁ ଆଶା ଛାଡ଼ିଥିଲେ । ଏବେ ସ୍ୱାମୀଙ୍କର ବିଦେଶ ଯିବା ତିନି ବର୍ଷ ପୂରିଗଲା । ପ୍ରଥମେ ସେ ଖଣ୍ଡେ ଦିଖଣ୍ଡ ଚିଠି ପଠାଇଥିଲେ । କିନ୍ତୁ ଚିଠିଗୁଡ଼ିକର ଉତ୍ତର କିଛି ମିଳିଲା ନାହିଁ । ସରଳାଙ୍କ ଚିଠିଗୁଡ଼ିକ ଖାଲି ଏକମୁହାଁ ରାସ୍ତାରେ ଯାଇଥିଲା ।

ସରଳା ସ୍ୱାମୀଙ୍କ ଆଶା ଛାଡ଼ି ରହିଲେ । କିନ୍ତୁ କଲିକତା ଆଡ଼ୁ ଫେରୁଥିବା ଗାଁର କେତେକ ଲୋକ କହୁଥାନ୍ତି ଯେ, ତାଙ୍କର ସ୍ୱାମୀଙ୍କୁ ସେମାନେ ଦେଖିଥିଲେ । ସେମାନେ ତାଙ୍କୁ ଗାଁକୁ ଯିବା କଥା କହିବାରୁ ସେ 'ପରେ ଯିବି' ବୋଲି କହି ଅନ୍ୟ ଆଡ଼େ ବାଟ କାଟନ୍ତି । 'କେଉଁଠି ରହୁଛନ୍ତି' ପଚାରିଲେ ସେ ବାଆଁରେଇ ଦିଅନ୍ତି । ତାଙ୍କ ଠିକଣା ବତାନ୍ତି ନାହିଁ । ଏସବୁ କଥା ଶୁଣି ସରଳାଙ୍କୁ ସ୍ୱପ୍ନ ଦେଖିଲା ପରି ଲାଗେ । ଶୋଇଲା ଶୋଇଲା ମୁହଁଗୁଡ଼ିକ ଚେଇଁଉଠେ । ସରଳା କେବଳ ସଧବା ହୋଇ ସମସ୍ତ କଟାନ୍ତି । ତାଙ୍କ ହାତର କାଚ ବଜ୍ର ହୋଇ ରହେ, ଆଉ ଉଜ୍ଜ୍ୱଳ ହୋଇ ରହେ ତାଙ୍କ ମଥାରେ ସିନ୍ଦୂର ।

ତାଙ୍କର ଘରସଂସାର ଦିନକୁ ଦିନ ଅଚଳ ହୋଇଉଠିଲା । ଦୁଇ ଦୁଇଟା ପିଲା । ପୁଣି ଅଶୀ ବର୍ଷର ଶାଶୁବୁଢ଼ୀ । ଘରେ ତ ସବୁ ଶୂନ୍‌ଶାନ୍ ।

କପରି ଚଳିବେ ? ଶେଷରେ ସେ ଦରଖାସ୍ତ କରି ଗାଁ ସ୍କୁଲରେ ଶିକ୍ଷୟିତ୍ରୀ ଭାବରେ ନିଯୁକ୍ତ ହେଲେ । ସେ କଥା ଆଖପାଖ ଗାଁ କେତେଖଣ୍ଡରେ ଚହଳ ପକାଇଦେଲା । ସବୁଆଡ଼େ ହୁଲୁସ୍ଥୁଲ୍ ହୋଇଗଲା । ଜନରବ ରଟିଲା । ଏତେ ବଡ଼ ଘରର ବୋହୂ ଦାଣ୍ଡକୁ ବାହାରିଲା ! କୁଳମାନ ବୁଡ଼ିଲା । ଯୁଗ ଖରାପ ହେଲା !

× × × ×

କ୍ରମେ ସମୟର ଚକ ଘୂରିଲା । ସରଳାଙ୍କ ଯୋଗୁଁ ଗାଁ ସ୍କୁଲରେ କାଉଁରିକାଠି ବୁଲିଗଲା । ମରୁଭୂଇଁରେ ସତେ ଯେପରି ମଳୟ ବହିଗଲା । ମରୁଭୂମିର ଶୁଖିଲା ବାଲିରେ ଖେଳିଗଲା ସମତଳର ସବୁଜିମା ! ଶାଗୁଆ ଗଛଲତା ଓ ଫୁଲଫଳରେ ସ୍କୁଲର ବଗିଚାଟି କେଡ଼େ ସୁନ୍ଦର ଦିଶିଲା । ଯେଉଁ ସ୍କୁଲକୁ ଦଶ ପନ୍ଦରଟି ପିଲା ବହୁ କଷ୍ଟରେ ଆସୁଛନ୍ତି ବୋଲି ପୂର୍ବ ଶିକ୍ଷକମାନେ କହୁଥିଲେ, ସେ ସ୍କୁଲରେ ବସିବାକୁ ପିଲାଙ୍କୁ ଜାଗା ମିଳିଲା ନାହିଁ । ପ୍ରତି ବର୍ଷ ଛାତ୍ର ସଂଖ୍ୟା ବଢ଼ି ଏବେ ଦୁଇଶହ ହେଲେଣି । ଯେଉଁଠି ଜଣେ ଶିକ୍ଷକ ରହିବାକୁ ପିଲା ହେଉନାହାନ୍ତି, ଆଉ ସ୍କୁଲ ଉଠାଇ ଦିଆଯିବ ବୋଲି ପରିଦର୍ଶକ କର୍ମଚାରୀମାନେ କଡ଼ା ମନ୍ତବ୍ୟ ଓ ଚେତାବନୀ ଦେଉଥିଲେ, ସେଠାରେ ଏବେ ପାଞ୍ଚୋଟି ଶିକ୍ଷକ ଶିକ୍ଷୟିତ୍ରୀ କାର୍ଯ୍ୟ କରୁଛନ୍ତି । ପ୍ରଥମେ ଯେଉଁଠି ତିନୋଟି ଶ୍ରେଣୀରେ ପିଲା ହେଉ ନ ଥିଲେ, ସେଠାରେ ଏବେ ପାଞ୍ଚୋଟି ଶ୍ରେଣୀରେ ପିଲା ଭରପୂର । ପିଲାମାନଙ୍କର ଅଧ୍ୟୟନ ଓ କଳରୋଳରେ ସ୍କୁଲଟି କର୍ମମୁଖର ଓ ପ୍ରାଣଚଞ୍ଚଳ ହୋଇଉଠିଛି ।

ସରଳାଙ୍କର କଥାରେ କି କାଉଁରି ମନ୍ତ୍ର ରହିଥାଏ କେଜାଣି, ସେ ଡାକିଲାମାତ୍ରେ ପିଲାମାନେ ମାଆ କୋଳ ଛାଡ଼ି ସ୍କୁଲ ମେଳକୁ ହସି ହସି ଚାଲି ଆସନ୍ତି । କେତେ ପିଲା ଖିଆପିଆ ଭୁଲି ସ୍କୁଲକୁ ଚାଲିଯାନ୍ତି । ସରଳାଙ୍କ ହସ - ପିଲାମାନଙ୍କର ମନ ଭୁଲାଇ ଦିଏ ; ତାଙ୍କର ବ୍ୟବହାର ସେମାନଙ୍କୁ ମନ୍ତ୍ରମୁଗ୍ଧ କରେ । କଥାରେ ଅଛି, ମାଆଠାରୁ ପିଲାମାନଙ୍କୁ ଯେ ଅଧିକ ସ୍ନେହ କରେ, ସେ ଡାଆଣୀ । ପ୍ରଥମେ ପ୍ରଥମେ ଗାଁର ସ୍ତ୍ରୀଲୋକମାନେ ସେହିପରି ଆଶଙ୍କା କରି କହିଲେ, "ସର ପାଠ ପଢ଼ିଛି । କ'ଣ ମନ୍ତ୍ରତନ୍ତ୍ର ଜାଣିଛି । ନ ହେଲେ ଏ ଛୋଟ ଛୋଟ ପିଲାଗୁଡ଼ିକ

ପାଠପଢ଼ାର କ ମଜା ପାଇଲେଣି ଯେ, ଭେଳକ ଲଗିଲା ଭଳି ଇସ୍କୁଲ ଘରକୁ ଧାଇଁଛନ୍ତି ! ଖିଆ ଶୋଷ ବି ଭୁଲି ଯାଉଛନ୍ତି । କ ମାୟା ଲଗେଇଛି ସତେ ! ପିଲାଗୁଡ଼ାଙ୍କୁ ତ ସେ ବଶ କରିଦେବ । ସେମାନେ ଆଉ ଆମକୁ କାହିଁକି ମାନିବେ ? ଘର ସବୁ ତ ସେମାନଙ୍କୁ ବିଷ ହେଲାଣି ।''

ସରଳା ସ୍କୁଲଟିକୁ ପିଲାମାନଙ୍କ ପାଇଁ ଅତି ମନୋହର କରିଥାନ୍ତି । ସେ ଛବି, ମୂର୍ତ୍ତି, ଖେଳନା ଠାରୁ ଗଛଲତା, ଫୁଲଫଳ ଯାଏ ଅନେକ ପଦାର୍ଥ ରଖି ସ୍କୁଲଟିକୁ ପିଲାମାନଙ୍କର 'ଖେଳଘର' ପରି କରିଥାନ୍ତି । ନିଜ ହାତରେ ଆଉ ଶିକ୍ଷକ ଓ ପିଲାଙ୍କ ସାହାଯ୍ୟରେ ସେସବୁ କରାଯାଇ-ଥାଏ । ଖେଳ ଭିତରେ ପିଲାମାନଙ୍କ ମନ ରଞ୍ଜାଇ ପାଠ ପଢ଼ାଯାଏ । ଇଟା କାଠର ଘର କ୍ରମେ ସ୍ନେହପ୍ରୀତି, ମାୟାମମତାରେ ମଧୁର ମୋହନ ସ୍ୱର୍ଗଭୂମି ଭାବରେ ଦେଖାଦେଇଥିଲା । ପିଲାମାନେ ସ୍କୁଲରେ ଥିବା ସମୟତକ ପରି-ବାରଜରେ ରହିଲା ପରି ବୋଧ କଲେ ଏବଂ ସରଳା ହେଲେ ପରିବାରଜର ମାଆ, ସବୁର କେନ୍ଦ୍ର ବିନ୍ଦୁ ।

ସରଳାଙ୍କ କାର୍ଯ୍ୟକଳାପ କେବଳ ନିଜର ସ୍କୁଲ ପରିସର ମଧ୍ୟରେ ଆବଦ୍ଧ ରହିଲା ନାହିଁ । ତାହା କ୍ରମେ ପଲ୍ଲୀର ପ୍ରତ୍ୟେକ ପରିବାରକୁ ପ୍ରଭାବିତ କଲା । ସମସ୍ତଙ୍କର ସୁଖଦୁଃଖର ସେ ଜଣେ ପ୍ରକୃତ ସାଥୀ ଭାବରେ ପରିଚିତା ହେଲେ । କାହା ଘରେ କେହି ରୋଗରେ ପଡ଼ିଲେ ସେ ଯାଇ ତା'ର ସେବା ଶୁଶ୍ରୂଷା କରିବାକୁ ଭୁଲନ୍ତି ନାହିଁ । କାହାର ବାହାଘର ହେଲେ ସେ ଯାଇ ମାହା ହୁଅନ୍ତି, ବିପଦ ଆପଦ ପଡ଼ିଲେ ଆହା କରନ୍ତି ।

ସେ ଭଲକରି ବୁଝିଛନ୍ତି ଯେ ମାଆ ଶିକ୍ଷିତା ହେଲେ, ପାଠର ମୂଲ୍ୟ ଜାଣିଲେ, ପିଲାମାନେ ସହଜରେ ଶିକ୍ଷାଲାଭ କରିପାରିବେ । ଜଣେ ପୁରୁଷ ପାଠ ପଢ଼ିଲେ, ଜଣେ ମାତ୍ର ଶିକ୍ଷିତ ହୁଏ ; ମାତ୍ର ଗୋଟିଏ ସ୍ତ୍ରୀ ପାଠ ପଢ଼ିଲେ ତା'ର ସମୁଦାୟ ପରିବାରଟିକୁ ଶିକ୍ଷିତ କରିପାରେ । ସେଥିପାଇଁ ସରଳା ଗ୍ରାମର ସ୍ତ୍ରୀ, ଝିଅମାନଙ୍କୁ ନେଇ ଗୋଟିଏ 'ନାରୀ ମଙ୍ଗଳ ସମିତି' ଗଢ଼ିଛନ୍ତି । ସେ ରାତିରେ ସ୍କୁଲରେ ସେମାନଙ୍କୁ ପାଠ ପଢ଼ାଇ କେତେ ଆଗେଇ ନେଲେଣି । ନେତି, ଚନ୍ଦ୍ରା, ପଦ୍ମ, କେତକୀ ପ୍ରଭୃତିଙ୍କ ଘରେ ଅବସ୍ଥା ଭଲ ନ ଥିବାରୁ ପିଲାଦିନେ ପାଠପଢ଼ି ପାରି ନ ଥିଲେ, ସେମାନେ

ଏବେ ବହିପତ୍ର, ଖବରକାଗଜ ପଢ଼ି କେତେ ଆନନ୍ଦିତ ହେଉଛନ୍ତି ! ସେମାନେ କଥାବାର୍ତ୍ତା ହୁଅନ୍ତି, "ଆମ ଆଖି ଫୁଟି ଯାଇଥିଲା । ଏବେ ଆମର ଆଖି ଫିଟିଗଲା । କେତେ କଥା ଜାଣି ପାରିଲୁ । କେତେ ପୁରାଣ, ଭାଗବତ ପଢ଼ିଲୁଁ । ଆମ ପାପ ଆଖି ପବିତ୍ର ହେଲା । ଜୀବନ ଧନ୍ୟ ହେଲା ।" ପାଠପଢ଼ା ସଙ୍ଗେ ସଙ୍ଗେ ସିଲେଇ କାମ ଶିକ୍ଷା, ଗର୍ଭିଣୀ ସ୍ତ୍ରୀ ଓ ଶିଶୁ ସ୍ୱାସ୍ଥ୍ୟ, ରନ୍ଧାବଢ଼ା ପ୍ରଭୃତି ସମ୍ବନ୍ଧରେ ଆଲୋଚନା ମଧ୍ୟ ହେଉଥାଏ । ସେହି ଗାଁର ନାରୀ ପ୍ରଗତି କଥା ସ୍ଥାନୀୟ ଲୋକମାନଙ୍କଠାରୁ ସରକାରୀ କର୍ମକର୍ତ୍ତାମାନଙ୍କ ପର୍ଯ୍ୟନ୍ତ ସମସ୍ତଙ୍କ ମୁଖରେ ଶୋଭା ପାଇଲା ।

ସୁଜନପୁର ଗାଁର ପୁରୁଷମାନେ ନାରୀମାନଙ୍କ ଉନ୍ନତି ଦେଖି ଯେତିକ ସୁଖୀ ହେଲେ, ସେତିକ ଲଜ୍ଜିତ ମଧ୍ୟ ହେଲେ । ବିଶେଷ କରି ଯେଉଁମାନେ ଅଶିକ୍ଷିତ ଥିଲେ, ସେମାନେ ଥରେ ମେଳ ହୋଇ ସରଳାଙ୍କ ଶରଣାଗତ ହେଲେ । ସେମାନଙ୍କ ଅନୁରୋଧରେ ସରଳା ତାଙ୍କ ସ୍କୁଲରେ ଯୁବ ଶିକ୍ଷକ ନରେନ୍ଦ୍ରବାବୁଙ୍କୁ ସେମାନଙ୍କ ପାଇଁ ଗୋଟିଏ ରାତି ସ୍କୁଲ ଖୋଲିବାକୁ କହିଲେ । ସେ ମଧ୍ୟ ନିଜେ ମଝିରେ ମଝିରେ ଯାଇ କୈଣ ବିଦ୍ୟାଳୟରେ ପଢ଼ୁଥିବା ଯୁବକ ଓ ପ୍ରୌଢ଼ମାନଙ୍କ ପାଠପଢ଼ା ଦେଖୁଥିଲେ । ନାରୀମାନଙ୍କ ଅପେକ୍ଷା ପୁରୁଷମାନେ ଅଳ୍ପଦିନ ଭିତରେ ପାଠପଢ଼ାରେ ଆଗେଇ ଗଲେ । ସେମାନଙ୍କ ମଧ୍ୟରୁ ଯେଉଁମାନେ କେତେକ ଶ୍ରେଣୀଯାଏ ପାଠପଢ଼ି ଅଭାବ ଅସୁବିଧାରୁ ବିଦ୍ୟାଳୟରୁ ବିଦାୟ ନେଇଥିଲେ, ଏଥିଭିତରେ ସେମାନେ ସବୁ ପାଠ ଭୁଲି ଯାଇଥିଲେ । ଆଉ କେତେକ ବିଦ୍ୟାଳୟର ବାରଣ୍ଡା ମଧ୍ୟ ମାଡ଼ି ନ ଥିଲେ, ପାଠପଢ଼ା ତ ଦୂରର କଥା । ସେମାନେ ସବୁ ଅନେକ ସମୟରେ ଶତମୁଖରେ ସରଳାଙ୍କ ପ୍ରଶଂସା କଲେ ।

ସେମାନେ ନିଜ ନିଜ ଭିତରେ କଥାବାର୍ତ୍ତା ହୁଅନ୍ତି, "ଆରେ ଭାଇ, କହନ୍ତି 'ଛତୁଉଠା କାଠ ଆଉ ନଶଉଠା ପାଠ' । କାଠରେ ଛତୁ ଫୁଟିଲେ ସେ ଯେପରି ଅକାମୀ ହୋଇଯାଏ, ସେପରି ଆମର ନଶ ଉଠିଲେ ପାଠ ହେବ ନାହିଁ । ଆମେ ତ ଏବେ କେତେ ପାଠ ପଢ଼ିଗଲୁଣି । କୋଉ ବହି ଆମେ ନ ପଢ଼ି ଛାଡ଼ିବା ନାହିଁ ।" "ଖବରକାଗଜ ତ ଭଲ ଭାବରେ ପଢ଼ି ଦେଉଛୁ । ଦୁନିଆଁର ସବୁ ହାଲଚାଲ ଆମକୁ ଜଣା ।"

"ସତରେ ଭାଇ, ଆମର ଆଖି ଥାଇ ଆମେ ଅନ୍ଧ ହୋଇଥିଲୁ । ଏବେ ଆମେ ନୂଆ ଯୁଗର ନୂତନ ନାଗରିକ ।" ସମସ୍ତେ ଏସବୁ କଥାକୁ ବଡ଼ ଉପଭୋଗ କରନ୍ତି ।

ସରଳା ଯେ କେବଳ ସେହି ପ୍ରାଥମିକ ବିଦ୍ୟାଳୟକୁ ଏପରି ଉନ୍ନତ ଓ ଆଦର୍ଶ କରିପାରିଥିଲେ ସେତିକି ନୁହେଁ, ସେ ସେଠାରେ ଗୋଟିଏ ମି. ଇ. ସ୍କୁଲ୍ ମଧ୍ୟ ଠିଆ କରିବାରେ ଅକ୍ଳାନ୍ତ ପରିଶ୍ରମ କରିଛନ୍ତି । ପ୍ରକୃତରେ ସେ ସୁଜନପୁର ରୂପ ବଦଳାଇ ପାରିଛନ୍ତି । ସେ ଅଞ୍ଚଳରେ ସରଳା ହୋଇଛନ୍ତି ଅତି ପରିଚିତା, ଅତି ଆଦରର ମହୀୟସୀ ନାରୀ । ସେ ହୋଇଛନ୍ତି ସମସ୍ତଙ୍କର ଆଦର୍ଶ । ତାଙ୍କର କାର୍ଯ୍ୟକଳାପ ହୋଇଛି ସବୁରି ଲୁଣ୍ଡିର କାହାଣୀ । ତାଙ୍କର ନାଁ ଶୁଣିଲେ ସଭିଏଁ ମୁଣ୍ଡ ନୁଆଁନ୍ତି ; ହାତଯୋଡ଼ି ପ୍ରଣାମ କରନ୍ତି ।

କୌଣସି ଭଲ କାମ ବୃଥା ଯାଏ ନାହିଁ । କୌଣସି ଭୁଲ ବୁଝାମଣା ଭୁଲ ହୋଇ ରହେ ନାହିଁ । ସରଳା ତାଙ୍କର ସମ୍ମାନ ସବୁଠି ପାଇଲେ । ଲୋକମାନଙ୍କର ଭାବରାଜ୍ୟରେ ଆଜି ଅପୂର୍ବ ବିପ୍ଳବ ଦେଖା ଦେଇଛି । ନିଜ କାମଦ୍ୱାରା ସରଳା ପିଲାଠାରୁ ବଡ଼ଯାଏ ଆଜି ସମସ୍ତଙ୍କୁ ବୁଝାଇ ଦେଇଛନ୍ତି ଯେ, ନାରୀ ଜନ୍ମ କେବଳ ପର ଘରକୁ ନୁହେଁ କିମ୍ବା ତା'ର ପାଠପଢ଼ା ଖାଲି ଚୂଲିମୁଣ୍ଡକୁ ନୁହେଁ । ସେ ସମାଜକୁ ନୂଆ କରି ଗଢ଼ି ଦେଇପାରେ, ସମୃଦ୍ଧ ପଥରେ ଆଗେଇ ନେଇପାରେ ।

ନିଜ ପାରିବାରିକ ଜୀବନର ଅସଂଖ୍ୟ ଦୁଃଖକଷ୍ଟର ବୋଝକୁ ପଛରେ ପକାଇ ସରଳା ଆଗେଇ ଚାଲିଛନ୍ତି ନିଜର କର୍ତ୍ତବ୍ୟପଥରେ । ଦାମ୍ପତ୍ୟ ଜୀବନର ଅପୂର୍ଣ୍ଣତା ଆଜି ତାଙ୍କ ମନରେ ଅସନ୍ତୋଷ ସୃଷ୍ଟି କରୁନାହିଁ । ବରଂ ତାହା ଦେଇଛି ଏକ ବିରାଟ ଜୀବନର ସାର୍ଥକ ସମ୍ପୂର୍ଣ୍ଣତା ।

ସେ ଥରେ ଏକ ସରକାରୀ ଚିଠି ପାଇ ବିସ୍ମିତ ହେଲେ । ଲେଖା ହୋଇଛି, "ଦୀର୍ଘ ତିରିଶ ବର୍ଷ ଧରି ବିଦ୍ୟାଳୟ ପରିଚାଳନା ଓ ଶିକ୍ଷା-ଦାନରେ ଆପଣ ଉଲ୍ଲେଖଯୋଗ୍ୟ କୃତିତ୍ୱ ଅର୍ଜନ କରିଥିବାରୁ ଏବଂ ସମାଜ ମଙ୍ଗଳ କାର୍ଯ୍ୟରେ ଜୀବନ ଉତ୍ସର୍ଗ କରିଥିବାରୁ, ଆପଣ ଭାରତ ସରକାରଙ୍କ ଦ୍ୱାରା ରାଷ୍ଟ୍ରୀୟ ପୁରସ୍କାର ପାଇବାକୁ ମନୋନୀତ ହୋଇଛନ୍ତି ।"

ଏ ସମ୍ବାଦରେ ଗ୍ରାମବାସୀମାନଙ୍କ ମନରେ ଅପୂର୍ବ ଆନନ୍ଦ ଖେଳିଯାଇଛି । ସମସ୍ତେ ଆସି ଧାଡ଼ିବାନ୍ଧି ସରଳାଙ୍କୁ ଅଭିନନ୍ଦନ ଜଣାଉଛନ୍ତି । ଡାକରେ ଅଭିନନ୍ଦନ ପତ୍ରମାନ ଆସି ଜମା ହୋଇଯାଉଛି । ଫୁଲମାଳ ଓ ଫୁଲପେଣ୍ଡା ତାଙ୍କ ନିକଟରେ ଗଦା ହୋଇଯାଇଛି । ସେ କିନ୍ତୁ ନିର୍ବିକାର । କେବଳ ଭାବୁଛନ୍ତି—"ଯୁଗ ବଦଳୁଛି । ମନ ବଦଳୁଛି । ମୋର ଯାହା ଶକ୍ତି ପାଇଛି କରିଛି । ଆଉ ଅନେକ କରିବାକୁ ବାକି ବି ରହିଛି ।"

# ଭଦ୍ରଲୋକ

## ଅଧ୍ୟାପିକା ପ୍ରତିଭା ରାୟ

ଅଚହ୍ନା ଅକ୍ଷରର ଚିଠି ଅଜଣା କୌତୂହଳରେ ମନକୁ ସବୁବେଳେ ଉଲ୍ଲସିତ କରେ । କିନ୍ତୁ ଚିଠିଟା ଶେଷ କଲବେଳକୁ ଶୁଭଦା ବାଷ୍ପରୁଦ୍ଧ ହୋଇଯାଇଥିଲା । କୈଶୋରର ସ୍ୱପ୍ନ ଭଳି ଦୂର ସମୟର ସୁଅରେ ଧୋଇ ହୋଇ ଅକ୍ଷରଗୁଡ଼ା ଅଚହ୍ନା ପାଲଟି ଯାଇଥିଲେ ବି ଚିଠି ଶେଷରେ ନାଁଟି ନିଜ ଗାଁ ଆକାଶର ଜହ୍ନ ଭଳି ଉଜ୍ଜ୍ୱଳ, ସ୍ନିଗ୍ଧ ଆଉ ଚିର ଅମ୍ଳାନ ହୋଇ ସ୍ମୃତିପଟରେ ଝକ ଝକ ହେଉଥାଏ ।

ଆହା ! ସେ ଆସି ଦାଣ୍ଡଦୁଆରୁ ଫେରିଗଲେ ? ଥରେ ନୁହେଁ, ଚାରି ଚାରି ଥର ? ଶୁଭଦାର ଉଆସ ଘରପଟେ ପହରା ଦେଉଥିବା ଅତି ବିଶ୍ୱସ୍ତ ଓ କର୍ତ୍ତବ୍ୟନିଷ୍ଠ ଦ୍ୱାରରକ୍ଷୀ ଏବଂ ଦେହରକ୍ଷୀମାନେ ତାଙ୍କୁ ବାହାରୁ ବାହାରୁ ଘଉଡ଼ାଇ ଦେଲେ । ଶୁଭଦା ସେମାନଙ୍କୁ ଶାସ୍ତି ଦେବ କି ? କିନ୍ତୁ ସେମାନେ ତ ଶୁଭଦାର ନିର୍ଦ୍ଦେଶ ହିଁ କଡ଼ାକଡ଼ି ପାଳନ କରିଛନ୍ତି ।

(ବିନା କାରଣରେ ଆଜକାଲି ତାର ବହୁ ସମୟ ଅଯଥାରେ ଖର୍ଚ୍ଚ ହୋଇଯାଏ । ପଦସ୍ଥ ସ୍ୱାମୀଙ୍କ ସୁପାରିସ ଏବଂ ଅନୁଗ୍ରହ ମିଳିବାରେ ଶୁଭଦା ହିଁ ଯେମିତି ଏକମାତ୍ର ନିର୍ଭରଯୋଗ୍ୟ ମାଧ୍ୟମ । ସେଇ କାରଣରୁ ବହୁ ସାଂସ୍କୃତିକ ଅନୁଷ୍ଠାନ, ସମାଜସେବା ସଂସ୍ଥା, କ୍ଲବ୍, ମହିଳା ସମିତି, ପତ୍ର-ପତ୍ରିକାର ସଭାସମିତି ଏବଂ ଉତ୍ସବ ଅନୁଷ୍ଠାନରେ ଯୋଗ ଦେବାପାଇଁ, ଉପଦେଷ୍ଟା ହେବାପାଇଁ ବା କାର୍ଯ୍ୟକାରୀ ସମିତିରେ ସଭ୍ୟା ହେବାପାଇଁ ତା ଉପରେ ସମସ୍ତେ ଚାପ ପକାନ୍ତି । ତା ଭିତରେ ନାହିଁ ନ ଥିବା ପ୍ରତିଭାର ଆବିଷ୍କାର କରି ତାକୁ ବେଳେ ବେଳେ ଅପଦସ୍ଥ କରିପକାନ୍ତି । ସେଥିପାଇଁ ଶୁଭଦାର କଡ଼ାକଡ଼ି ନିର୍ଦ୍ଦେଶ, ଲୋକ ଦେଖି ଭିତରକୁ ଛାଡ଼ିବ ବା ବାହାରୁ ଫେରାଇ ଦେବ । ସ୍କୁଲ ଯାଉଥିବା ଶୁଭଦାର ପୁଅଝିଅମାନେ ବି ଜାଣି ଗଲେଣି କେଉଁ ଲୋକ ବୈଠକ ଘରେ ବସିବାର ଯୋଗ୍ୟ, କିଏ ବାହାରେ

ଅପେକ୍ଷା କରିବାର କଥା, କିଏ ଫାଟକ ସେପଟୁ ଫେରିଯିବା ଉଚିତ । ସେଇ ଗଣନା ଅନୁସାରେ ସେମାନେ ଜଟିଳଖି ଫୋନ୍‌ରେ ବି ଉତ୍ତର ଦେଇ ଶିଖିଲେଣି । ପିଲାମାନେ ଉପସ୍ଥିତ ବୁଦ୍ଧି ଖଟାଇ ତାହା ମିଛ କହିବାବେଳେ ଶୁଭଦାକୁ ବେଳେ ବେଳେ ଖରାପ ଲାଗେ ଯେ, ମା ପାଖରୁ ହିଁ ତା ପିଲାମାନେ ମିଛ କହିବାର ତାଲିମ ନେଉଛନ୍ତି । କିନ୍ତୁ ସବୁ ସତ କହିଲେ ଗୁଡ଼ାଏ ଝମେଲାରେ ପଡ଼ିବାକୁ ହୁଏ । ଆଜିକାଲି ନିଜ ଘର ଅପେକ୍ଷା ଅନ୍ୟ ଘରର ବୈଠକ ଘରେ ସମୟ କଟାଇବାରେ ବେଶି ଆଗ୍ରହ ଏବଂ ଆନନ୍ଦ ପାଆନ୍ତି, କିଛି କରୁ ନ ଥିବା ଅଥଚ ଅବିରତ କାର୍ଯ୍ୟବ୍ୟସ୍ତତାରେ ଧାଁ ଦଉଡ଼ କରୁଥିବା ଭଦ୍ରଲୋକମାନେ ।)

ତା ବୋଲି ଶେଷରେ ତାଙ୍କୁ ହିଁ ଫେରିଯିବାକୁ ହେଲା ଫାଟକ ସେପାଖରୁ ! ଥରେ ହେଲେ ଏମାନେ ଶୁଭଦାକୁ ପଚାରି ଗଲେନି, ସେ କିଏ—ତାଙ୍କୁ ଘରକୁ ଡାକିବା ଉଚିତ କି ନା।

ଶୁଭଦା ସେଦିନ ସାରାଦିନ ଅବ୍ୟକ୍ତ ବେଦନାରେ କୁହୁଳିଲା ଏବଂ ବିନା କାରଣରେ ସମସ୍ତଙ୍କ ଉପରେ ଚିଡ଼ି ଚିଡ଼ି ହେଲା । ଶେଷ ଥର ଗତ ବୁଧବାର ଦିନ ସକାଳେ ସେ ଆସି ଫେରି ଯାଇଛନ୍ତି । ବୁଧବାର ସକାଳେ ଶୁଭଦା କୁଆଡ଼େ ଯାଇଥିଲା ? ଶୁଭଦା ମନେ ପକାଇଲା ଯେ, ସେଦିନ ସେ ସକାଳ ସାରା ଘରେ ହିଁ ଥିଲା ।

ତେବେ ସେ ଫେରିଗଲେ କାହିଁକି ? ଶୁଭଦା ଗୋଟି ଗୋଟି କରି ସମସ୍ତଙ୍କୁ ପଚାରିଲା—କେହି 'ଭଦ୍ରଲୋକ' ତାଙ୍କୁ ଆସି ସେଦିନ ଖୋଜୁଥିଲେ କି ?

ସମସ୍ତେ ମନେ ପକାଇ ପକାଇ କହିଥିଲେ—ନା, କେହି ଭଦ୍ରଲୋକ ସେଦିନ ସକାଳେ ଖୋଜି ନାହାନ୍ତି । ଯେଉଁ କେତେଜଣ ଶୁଭଦାଙ୍କ ଦେଖା ନ ପାଇ ଫେରି ଯାଇଛନ୍ତି, ଶୁଭଦା ସେମାନଙ୍କୁ ଦେଖା ଦେବାକୁ ଚାହିଁଲେ ନାହିଁ ବୋଲି ସେମାନଙ୍କୁ ଫେରାଇ ଦିଆଯାଇଛି । ଏମିତି ତ ସବୁଦିନ ହୁଏ । କେତେ ଲୋକ ବୈଠକ ଘରେ ବସନ୍ତି, କେତେକ ବାହାରୁ ଫେରିଯାଆନ୍ତି । କେହି ଫେରିଯାଇଛି ବୋଲି ଶୁଭଦା ଆଜି ଏତେ ବିବ୍ରତ କାହିଁକି ? ଥରେ ନୁହେଁ, ଚାରି ଚାରି ଥର ସେ ଆସି ଶୁଭଦାର ବନ୍ଦ ଫାଟକ ଦ୍ୱାରରୁ ଫେରିଛନ୍ତି ବୋଲି ଭାବିବାମାତ୍ରେ ଗୋଟାଏ ଗୁରୁତର

ଅପରାଧ ବୋଧ ଶୁଭଦାର ଗ୍ରନ୍ଥି ଭିତରେ ଅଜଗର ସାପ ଭଳି ଗୁଡ଼େଇ ହୋଇ ଚକା ବାନ୍ଧିଥାଏ—ତାକୁ ଆଶ୍ୱସ୍ତିରେ ଅସ୍ଥିର କରୁଥାଏ ।

ତାର ଏଇ ଭାବପ୍ରବଣତାକୁ ବୁଝିବା ପାଇଁ ଏ ଘରେ କେହି ନାହାନ୍ତି । ଏମିତିଆ କଥାଟାଏ ପଦସ୍ଥ ସ୍ୱାମୀଙ୍କୁ କହି ତାଙ୍କର ସମସ୍ତ ନଷ୍ଟ କରାଯାଇ ପାରେନା—ପିଲାଏ ଏକଥା ଶୁଣି ଅବଜ୍ଞାରେ ହସି ଉଡ଼ାଇବେ । ଶୁଭଦା କାହାକୁ ଏକଥା ବୁଝାଇବ ଯେ, ଯିଏ ଆସି ବାରମ୍ବାର ତାର ଉଆସ ଦ୍ୱାରରୁ ଫେରି ଯାଇଛନ୍ତି, ସେ ତାର ହୃଦୟ ଭିତରେ ଆସନ ଜମାଇ କେତେ କାଳରୁ ବସିଛନ୍ତି ବୋଲି ?

ଆଉଥରେ ଚିଠିଟାକୁ ପଢ଼ିଲା ଶୁଭଦା । ଏଥର ଅକ୍ଷର ଚାହାଁ ଚାହାଁ—କଥାଗୁଡ଼ା ଯେମିତି ନିଜ ସ୍ମୃତିରୁ ଭାସିଆସୁଛି । ଲେଖାଥିଲା—

ମା ଶୁଭଦା,

ଜଗନ୍ନାଥଙ୍କ କୃପାରୁ ସର୍ବଶୁଭରେ ଥା— । ତୋର ସବୁ ସୁଖବର, ତୋ ସ୍ୱାମୀଙ୍କର ଯଶଖ୍ୟାତି, ତୋ ପିଲାମାନଙ୍କର କୃତିତ୍ୱ ସବୁ ଖବର ମୁଁ ରଖିଛି, ସୁଖୀ ହୋଇଛି । ଏବେ ମୁଁ ଅକର୍ମଣ୍ୟ—ତଥାପି ଯାଇଥିଲି ଚାରି ଚାରି ଥର ଖାଲି ତତେ ଦେଖିବା ପାଇଁ । ଥରେ ତୁ ବାହାରକୁ ଯାଇଥିଲୁ, ଆଉଥରେ ଠାକୁର ପୂଜାରେ ବସିଥିଲୁ, ତାପର ଥରକ ବୈଠକ ଘରେ 'ଭଦ୍ରଲୋକମାନେ' ଥିବାରୁ ତୁ ବ୍ୟସ୍ତ ଥିଲୁ । ଶେଷ ଥରକ ତୁ ଗାଧୁଆ ଘରେ ଥିଲୁ । ମୁଁ ଅପେକ୍ଷା କରିବାକୁ ପ୍ରସ୍ତୁତ ଥିଲି ; ମାତ୍ର ତୋ ଲୋକମାନେ କହିଲେ, "ଘର ସାମ୍ନାରୁ ହଟି ଯାଅ—ସାହେବ ଆସିବେ । ଗସ୍ତରେ ଯାଇଛନ୍ତି ଚାରି ଦିନ ହେବ, ଆଜି ଫେରିବେ ।" ବାହାର ପାଚେରୀର ଶେଷ ମୁଣ୍ଡରେ ଓଳିଏ ଠିଆ ହେଲି । ତୁ ପଦାକୁ ବାହାରିଲୁ ନାହିଁ । ତୋ ସ୍ୱାମୀ ଫେରିଲେ । ଭାରି ଦୟାବନ୍ତ ପୁରୁଷ । ମନଟା ଆକାଶ ଭଳି ଉଚ୍ଚ, ପୃଥିବୀ ଭଳି ଖୋଲା ଆଉ ଉଦାର । ମୋ ଉପରେ ଆଖି ପଡ଼ିବାମାତ୍ରେ ଟିକେ ଅଟକି ଗଲେ । ପକେଟରୁ ଟଙ୍କା ଦୁଇଟା କାଢ଼ି ବଢ଼ାଇ ଦେଲେ । କହିଲେ, "ନିଅ ବୁଢ଼ା । କେତେ ଖରାଟାରେ ଠିଆ ହୋଇଛ । ଯାଅ ଏଥର ।"

ମତେ ଭିକାରୀ ଭାବିଲେ ବୋଲି ମୋର ଦୁଃଖ ହେଲାନି । ମୋର ରୂପ ଆଉ ଭେକ ତ ସେମିତି ହୋଇଛି । ବରଂ ଖୁସି ହେଲି ତାଙ୍କର

ଧାଡ଼ାପଣିଆ ଦେଖି । ଟଙ୍କା ଦୁଇଟି ନେଲି, ନ ହେଲେ ସକାଳୁ ସକାଳୁ ସେ ମନ ଖରାପ କରିଥାନ୍ତେ । ସେ ଗଲା ପରେ ତାଙ୍କର କଲ୍ୟାଣ କାମନା କରି ଟଙ୍କା ଦୁଇଟି ଦେଇଦେଲି ରାସ୍ତାରେ ଯାଉଥିବା ଭିକାରୁଣୀ ବୁଢ଼ୀକୁ । ରାସ୍ତାରେ ଭିକାରୀଙ୍କର କୋଉ ଅଭାବ ଅଛି ଯେ—

ତୋ ପାଖକୁ ଆସିଥିଲି ଗୋଟାଏ ଅତି ଜରୁରୀ କାମରେ । କେଉଁଦିନ ମରିଯିବି କିଏ କହିବ ? ଗୋଟାଏ ଗୋଡ଼ ଜାଣ ମଶାଣିରେ ଦେଇ ସାରିଛି । ପୁଅ ବୋଲି ଗୋଟିଏ ଯେ ଆଇ. ଏ. ଫେଲ୍ ହୋଇ ପାଠରେ ଡୋରି ବାନ୍ଧିଲା । ଏବେ ବେକାର—ମୋର କିଛି ଉପାୟ ନାହିଁ । ତୁ ସାହାଯ୍ୟ କରିବୁ, ଏଇ ଆଶାରେ ଆସିଲିଣି ଚାରି ଥର । ଈଶ୍ୱରଙ୍କର ବରାଦ ନାହିଁ—କେମିତି ତୋ ସଙ୍ଗେ ଦେଖା ହେବ ? ଥରେ ଗାଁରୁ ଭୁବନେଶ୍ୱର ଯିବାରେ ପନ୍ଦର ଟଙ୍କା ଖର୍ଚ୍ଚ । ମୋର ଶକ୍ତି ପାଉନାହିଁ—ସାମର୍ଥ୍ୟ କୁଳାଉ ନାହିଁ, ତୁ ଉତ୍ତର ଦେଲେ ସାହା କରିବ—

ଅକର୍ମଣ୍ୟ ହେବାରୁ ତୋର ସାହାଯ୍ୟ ଲୋଡ଼ିଲି, କିଛି ଖରାପ ଭାବିବୁ ନାହିଁ । ଇତି ।

ମାଷ୍ଟ୍ରେ

ସମୟର ଚକ ତଳେ ଧୂସର ହୋଇଯାଇଥିବା ଅସ୍ପଷ୍ଟ ମୂର୍ତ୍ତିଟିଏ ଆଖି ଆଗରେ ସ୍ପଷ୍ଟ ହୋଇ ଦିଶୁଛି । ଚତୁର୍ଦ୍ଧା ମୂର୍ତ୍ତି ଭଳି ନଦାପିଠା ଶ୍ୟାମଳ ବିଶାଳ ମୂର୍ତ୍ତିଟିଏ । ଗୋଲ ମୁଣ୍ଡ, ଚକା ମୁହଁ, ବଡ଼ ବଡ଼ ଗମ୍ଭୀର ଆଖି, ପୃଥୁଳ ଉଦର, ଖମ୍ବ ଭଳି ମଜବୁତ ଗୋଡ଼ ହାତ, କବାଟ ଭଳି ଚଉଡ଼ା ଓ ଜବର ପିଠି । ଖଇର ବୋଳରେ ନାଲି ପଡ଼ିଥିବା ପାନଖିଆ ଓଠ । ସବୁତକ ଏକାଠି ମିଶାଇ ଦେଲେ ସେ ହେବେ ନାରଣ ମାଷ୍ଟ୍ରେ । ଆଖି ବୁଜି ସେଇ ରୂପକୁ ମନେ ପକାଇଲେ ଦିଶିବ 'ଜଗନ୍ନାଥ'ଙ୍କ ରୂପ ଭଳି । ମନରେ ଭୟ ନୁହେଁ, ଭକ୍ତି ଭରିଯିବ, ଶ୍ରଦ୍ଧା ଉଚ୍ଛୁଳି ପଡ଼ିବ ।

ପଦ୍ମାସନ ପକାଇଲା ଭଳି ଚଉଡ଼ା ଚକାପାରି ସେ ବସନ୍ତି । ପାଖିକିଆ କରି ବାଁ ଜଙ୍ଘ ଉପରେ ଶୁଭଦାକୁ ବସାଇ ପାଠ ଆରମ୍ଭ କରିଥିଲେ । ବ୍ରହ୍ମା, ବିଷ୍ଣୁ, ମହେଶ୍ୱର ଲେଖି ଅକ୍ଷର ଶିଖାଇଥିଲେ । କାହାଣୀ କହି କହି, ଗେଲ କରି କରି, କୁତୁ କୁତୁ କରି, ହସାଇ ହସାଇ,

ନାରଣ ମାଷ୍ଟ୍ରେ ଚଗଲ ପିଲଙ୍କୁ ପାଠ ପଢ଼ାନ୍ତି । (ମଲ କାଉଁଚିଆ ପାଠ ଭଳ ସବୁ ବେତଟିଏ ନର୍ଜୀବ ହୋଇ ପଡ଼ିଥାଏ ଦୂରେଇ କରି । କେବେ ଦରକାରରେ ଆସେ ନାହିଁ । ପିଲିଏ ନାରଣ ମାଷ୍ଟ୍ରଙ୍କୁ ଭୟ କରନ୍ତି ନାହିଁ, ଭଲ ପାଆନ୍ତି । ଅବଜ୍ଞା କରନ୍ତି ନାହିଁ, ସମ୍ମାନ କରନ୍ତି । ସ୍କୁଲ ରେଜିଷ୍ଟରରେ ନାଁ ଲେଖା ହେଲାବେଳେ ଶୁଭଲକ୍ଷ୍ମୀ ପରିବର୍ତ୍ତେ 'ଶୁଭଦା' ଲେଖିଥିଲେ ନାରଣ ମାଷ୍ଟ୍ରେ । କହିଥିଲେ ଆମର ଠାକୁର ଜଗନ୍ନାଥ, ବଳଭଦ୍ର, ସୁଭଦ୍ରା, ତିନି ଅକ୍ଷର ଶୁଭ । ଶୁଭଦା ଖାଲି ଲକ୍ଷ୍ମୀ ହେବ ନାହିଁ, ସ୍ୱରସ୍ୱତୀ ବି ହେବ । ସମସ୍ତଙ୍କ ପାଇଁ ଶୁଭଦାୟିନୀ ହେବ । ବାପା ଖୁସି ହୋଇଥିଲେ । ସେଇଦିନୁ ସେ ହେଲା ଶୁଭଲକ୍ଷ୍ମୀ ପରିବର୍ତ୍ତେ 'ଶୁଭଦା' । ବଡ଼ ହେଲା ପରେ ଶୁଭଲକ୍ଷ୍ମୀ ଅପେକ୍ଷା 'ଶୁଭଦା' ନାଁଟି ତାକୁ ଭଲ ଲାଗିଥିଲା । ସ୍କୁଲ ଖାତାରେ ନାଁ ଲେଖା ହେଲାବେଳେ ଜାତକରେ ଲେଖାଥିବା ଅଧିକାଂଶ ନାଁ ନାରଣ ମାଷ୍ଟ୍ରଙ୍କ କଲମରେ ବଦଳିଯାଏ । ବଡ଼ ହେବା ପରେ ସେଇ ନାଁଟି ସବୁ ପିଲଙ୍କୁ ଭଲ ଲାଗେ, ଯେମିତି ଭଲ ଲାଗନ୍ତି ନାରଣ ମାଷ୍ଟ୍ରେ, ଅନ୍ୟ ମାଷ୍ଟ୍ରଙ୍କଠାରୁ ।

ଶୁଭଦା ବାପାଙ୍କର ଗେହ୍ଲା ଝିଅ । ଆଦର ସୋହାଗ ନ ମିଳିଲେ ସେ କାହାରି ବଶ ହେବାର ନୁହେଁ । ବୋଉ ଯଦି କେବେ ରାଗରେ ଗୋଟାଏ ମାଡ଼ ଦେଇଥିବ, ବାପା ଘରକୁ ଆସିବାଯାଏ ଲହରେଇ ଲହରେଇ କୋହଟାକୁ ଲମ୍ୱେଇ ରଖିଥିବ ଶୁଭଦା । ବାପାଙ୍କୁ ଦେଖିଲେ କିଆଁ ଅମୃତଭଣ୍ଡାରେ ଟେକାମାଡ଼ ବାଜିଲାଭଳି ପୁଣିଥରେ ଝର ଝର ଝରିଯିବ ସଦ୍ୟ ଲୁହର ଧାର । ଭୁଲି ହୋଇ ଯାଇଥିବା ମାଡ଼ର କଷ୍ଟଟା ଲଙ୍କାମରିଚ ବାଟିଥିବା ହାତ ପରି ପୁଣିଥରେ ଚୁରୁ ଚୁରୁ ହୋଇ ପୋଡ଼ି ଉଠିବ । ବାପା ତାର ପିଠି ଆଉଁସି ଦେବେ, ବିନା କାରଣରେ ସୁନା ଝିଅଟାକୁ କାହିଁକି ମାଡ଼ ଗାଳି ଦିଅ ବୋଲି ବୋଉ ଉପରେ ଟିକେ କୃତ୍ରିମ ରୋଷ ପ୍ରକାଶ କରିବେ । ବାସ୍, ଶୁଭଦା ନିଆଁରେ ପାଣି ପଡ଼ିବା ଭଳି ଥପ୍ କରି କାନ୍ଦ ବନ୍ଦ କରିବ । ଓଠରେ ହସର ବିଜୁଳି ଖେଳାଇ ବୋଉ କାନରେ ମୁହଁ ଲୁଚେଇବ । କହିବ, "ବୋଉ, ବାପା ତତେ ମିଛଟାରେ ଗାଳି ଦିଅନ୍ତି କାହିଁକି ଯେ—ତୁ ଜମାରୁ ମନଦୁଃଖ କରିବୁନି । ମୋ ସୁନା ବୋଉଟା ପରା—"

ଶୁଭଦା ଏମିତ କାହାର କଡ଼ା କଥା ପଦେ ସହିବନି, ଆଉ କାହା ମନରେ ଦୁଃଖ ଦେବା କଥା ବରଦାସ୍ତ କରିବନି । ଲଜକୁଳି ଫୁଲ ଭଳି ଲଜୁଣୀ ମନଟିଏ । ଛୁଇଁଦେଲେ ଦାଗ ହୋଇଯାଏ । ନାରଣ ମାଷ୍ଟ୍ରେ ସେକଥା ଜାଣନ୍ତି ଯେ ନାଲି ଆଖି ଦେଖାଇ ଶୁଭଦାଠାରୁ ପାଠ ଆଦାୟ କରିହୁଏନା, କାରଣ କାନ୍ଦି କାନ୍ଦି ଶୁଭଦାର ଆଖି ଦୁଇଟା ମାଷ୍ଟ୍ରଙ୍କ ଆଖିଠାରୁ ନାଲି ହୋଇଯାଏ ବେଶି । ପିଠି ଥାପୁଡ଼ାଇ 'ସାବାସ୍' କହିଦେଲେ ଶୁଭଦା ପାଠ ପଢ଼େ ନାହିଁ, ପିଇଯାଏ । ମାଷ୍ଟ୍ରେ ପିଲାଙ୍କର ନାଡ଼ୀ ନକ୍ଷତ୍ର ଦେଖି ପାଠ ପଢ଼ାନ୍ତି । କେଉଁ ଔଷଧ କାହାକୁ କାମ କରେ, କେଉଁ ମନ୍ତ୍ରରେ କିଏ ବଶ ହୁଏ, ସେ କଥା ନାରଣ ମାଷ୍ଟ୍ରେ ବୈଦବିଧାତା ଭଳି ଜାଣନ୍ତି କେମିତି କେଜାଣି ? ଶୁଭଦା ଭାରି ଡରକୁଳିଟା । ଅଚିହ୍ନା ମଣିଷ, ଚିହ୍ନା ଗାଁ ରାସ୍ତା, କୁକୁର, ମାଙ୍କଡ଼, ମଶାଣି, ବିଲ, ନାଳ ଉପର କାଠପୋଲ, ଠାଇଁ ଠାଇଁ ଖାଲ, ଆଉ ଝାମ୍ପୁରି ଗଛ ତଳର ଅନ୍ଧାରିଆ ଛାଇ, ସମସ୍ତେ ତାକୁ ଡରାନ୍ତି । ସ୍କୁଲ ଛୁଟି ହେଲେ ଡର ମାଡ଼ୁ ନ ଥିବା ରାସ୍ତାଯାଏ ବଳାଇ ଦେବାପାଇଁ ନାରଣ ମାଷ୍ଟ୍ରେ କିଛି ବାଟ ତା ସଙ୍ଗେ ସଙ୍ଗେ ଚାଲି ଚାଲି ଆସନ୍ତି ।

ସ୍କୁଲ ପାଖକୁ ଲାଗି ବୁଢ଼ା ପୀରଙ୍କ ଆସ୍ଥାନ । ଝଙ୍କା ବରଗଛର ଛନ୍ଦାଛନ୍ଦି ଓହଳ ସବୁ ବ୍ରହ୍ମରାକ୍ଷସର ହାତ ଭଳି ତଳକୁ ଲମ୍ବି ଆସିଥାନ୍ତି ସତେ କି ଧରଣୀର ଅନ୍ତ ବଦାରିବା ପାଇଁ । ଗଛ ଅଗରୁ ମେଳା ମେଳା ମାଙ୍କଡ଼ ଓହ୍ଲାଇ ଆସି ଶିକାର ଗୋଡ଼େଇ ବାଟ ଜଗନ୍ତି ରାସ୍ତା ମଝିରେ । ପୀର ସାହେବଙ୍କ ଦୁଇକଡ଼ ରାସ୍ତା ତଳକୁ ମୁସଲମାନ କବରଖାନା । ଏତକ ରାସ୍ତା ଶୁଭଦାକୁ ଯମପୁରୀ ଭଳି ଭୟାବହ ଲାଗେ । ନାରଣ ମାଷ୍ଟ୍ରେ ଶୁଭଦାର ହାତ ଧରି ମଜା ଗପଟିଏ କହି କହି ସେତକ ରାସ୍ତା ପାର ହୋଇ ଯାଆନ୍ତି । ତାପରେ ଡାକ୍ତରଖାନା । ସେଠି ମଧ୍ୟ ଦିନ ଦିପହରରେ ଡର ଶୁଭଦାର ବାଟ ଜଗେ । ଶବ ଏବଂ ରୋଗୀମାନଙ୍କର କଥା ଠିକ୍ ସେଇଠି ମନେପଡ଼େ ଏବଂ ଶୁଭଦା ସେମାନଙ୍କୁ ପ୍ରାଣେ ଡରେ । ଡାକ୍ତରଖାନା ପାରି ହେଲେ ନାଳବନ୍ଧ ପର୍ଯ୍ୟନ୍ତ, ସଳଖ ରାସ୍ତାର ଦୁଇକଡ଼କୁ ଲାଗି ତେଉତେଉକା ସବୁଜ ଧାନକ୍ଷେତ । ସିଏ ବି ଡରାଏ ଶୁଭଦାକୁ । ସବୁଜ ତେଉ ସବୁ ହାତ ବଢ଼ାଇ ଶୁଭଦାର କୁନି କୁନି ପାଦ ଦୁଇଟାକୁ ଯାଦ କଥାଣି ଭିତରକୁ

ଟାଣିନେବେ, ଆଉ ସେଠି ଯଦି ଥିବେ ବେଙ୍ଗ, କଙ୍କଡ଼ା କି କୁମ୍ଭୀରଛୁଆ, ଶୁଭଦା କଣ କରିବ ?

ନାରଣ ମାଷ୍ଟ୍ରେ ଖାଲି ପାଦରେ ବାଲି ଉପରେ ଉଗ ଉଗ ପାଦ ପକାଉ ପକାଉ କହନ୍ତି—ଚାଲ, ନାଳବନ୍ଧରେ ଉଠାଇ ଦେଇ ଆସିବି । ନାଳବନ୍ଧକୁ ଉଠିଗଲେ ଶୁଭଦା ସାହସ ଫେରିପାଏ । କାଠପୋଲ ସେପଟେ ଗାଁର ସେତେବେଳକାର ସ୍ଲେଟ ବଜାରଟି ବୁଢ଼ୀମା'ର କୋଳ ପରି ଘରି ନିର୍ଭୟ ଲାଗେ । ମାତ୍ର ପୋଲ ପାରି ହେଲେ ତ ଯାଇ ବଜାର ଆସିବ । ନାରଣ ମାଷ୍ଟ୍ରେ ହାତ ଧରି ଧରି ଦଦରା କାଠପୋଲ ପାରି କରିଦିଅନ୍ତି ।

ପୋଲ ପାରି ହେଲେ ଶୁଭଦା କହେ—ମାଷ୍ଟ୍ରେ, ମୁଁ ଏଥର ଚାଲିଯିବି, ଘର ଦିଶିଲାଣି । ଆଉ ଡର ନାହିଁ । ନାରଣ ମାଷ୍ଟ୍ରେ ସେମିତି ଚାଲୁ ଚାଲୁ ମୁଣ୍ଡ ନାଡ଼ି କହନ୍ତି— ଉହୁଁ, ବଜାରଟା ପାର କରେଇଦିଏ—ଗାଡ଼ି, ମଟର ଦିନକୁ ତିନି ଥର ଯାଆସ କରୁଛି ତ ! କାଳେ ଗୋଟାଏ ଆସିଯିବ ଅବକା—

ଶୁଭଦା ଜାଣେ, ନାରଣ ମାଷ୍ଟ୍ରେ ବି ଜାଣନ୍ତି ଦିନକୁ ତିନି ଥର ମାତ୍ର ଯାଆସ କରୁଥିବା ଗାଡ଼ି ମଟର ସେ ସମୟରେ ହଠାତ୍ କାହିଁ 'ଆସେ ନାହିଁ କି ଯାଏ ନାହିଁ' । ତାର ଗୋଟାଏ ନିର୍ଦ୍ଦିଷ୍ଟ ବେଳ ଅଛି । ତଥାପି ନାରଣ ମାଷ୍ଟ୍ରେ ବଜାର ପାରିହେବା ପର୍ଯ୍ୟନ୍ତ ତା ସଙ୍ଗେ ଆସନ୍ତି । ଶୁଭଦାଙ୍କ ଘର ଚାରିପଟେ ବୁଲିଥିବା ବରଗଡ ହତାଟା ବଜାର ଶେଷକୁ ଲାଗିଛି । ସେଇଠି ଫାଟକ ପାଖରେ ଠିଆ ହୁଅନ୍ତି ନାରଣ ମାଷ୍ଟ୍ରେ । କହନ୍ତି—ଯା, ଏଥର ଚାଲି ଯା ।

ଫାଟକ ପାଖରୁ ଘର ପର୍ଯ୍ୟନ୍ତ ସଳଖ ରାସ୍ତାରେ ଶୁଭଦା ଏଥର ଗୋଟିଏ ଗୋଟିଏ ଚାଲେ । ତାର ଇଚ୍ଛା ହୁଏ ସେ ମାଷ୍ଟ୍ରଙ୍କୁ ଘର ପର୍ଯ୍ୟନ୍ତ ଡାକନ୍ତା । ଆଉ ତା ବୋଉ ମାଷ୍ଟ୍ରଙ୍କୁ ଦହି ସରବତ ଦିଅନ୍ତା, ନ ହେଲେ ବାଧ କରି ଖାଇବାକୁ ଦେଇ ଛାଡ଼ନ୍ତା । କିନ୍ତୁ ସେ ଜାଣେ ନାରଣ ମାଷ୍ଟ୍ରେ ଗାଧୋଇବେ, ଠାକୁରଂ ପୂଜା କରିବେ, ତେବେ ଯାଇ କିଛି ଖାଇବେ । ସକାଳୁ ଅଗାଧୁଆରେ ଚା, ପାନ ଛଡ଼ା ସେ ଆଉ କିଛି ଖାଆନ୍ତି ନାହିଁ ।

ଶୁଭଦା ଘରେ ପଶିବାଯାଏ ନାରଣ ମାଷ୍ଟ୍ରେ ଖରାଟାରେ ସେମିତି ଠିଆ ହୋଇଥାନ୍ତି । ଶୁଭଦା ଖାଇ ବସିଲାବେଳେ ଭାବେ, ନାରଣ ମାଷ୍ଟ୍ରେ

ଅଗାଧୁଆ, ଅଖିଆ ତା ପାଇଁ ପ୍ରତିଦ୍ୱନ୍ଦ ଖବରରେ ଏତକ ବାଟ ଗ୍ଳଲନ୍ତ କେଉଁ ଆଶାରେ ? ନାରଣ ମାଷ୍ଟ୍ରେ ହନେ କେବେ ମୁହଁ ଖୋଲି ନିଜର ଅଭାବ ଅସୁବିଧା କଥା କେଉଁ ଅଭିଭାବକଙ୍କ ପାଖରେ କହନ୍ତି ନାହିଁ । ପାଠରେ ପଛୁଆ ପିଲମାନଙ୍କୁ ଛୁଟି ପରେ ଘଣ୍ଟାଏ ଅଧିକା ପାଠ ପଢ଼ାନ୍ତି ବୋଲି ବାପମା'ଙ୍କଠାରୁ ସେଥିପାଇଁ ଟିଉସନ ବାବଦ ଦରମା ନଅନ୍ତି ନାହିଁ । ନିଜ ଇଚ୍ଛାରେ ସେ ବିଦ୍ୟା ଦାନ କରନ୍ତି, ସ୍ନେହ ଦାନ କରନ୍ତି । ତାର ମୂଲ୍ୟ କଣ ଏତେ କମ୍ ଯେ ସେ ହାତ ପତାଇ ନେବେ ? ନାରଣ ମାଷ୍ଟ୍ରେ ସବୁବେଳେ କହନ୍ତି—ତୋ ବାପାମା' ତତେ ଲକ୍ଷ୍ମୀ ଠାକୁରାଣୀ ଭାବନା ସ୍ଥାପନା କରିବା ପାଇଁ ଗ୍ଲହାଁନ୍ତି, ମୁଁ କିନ୍ତୁ ତତେ ସ୍ୱରସ୍ୱତୀଭାବେ ଦେଖିବାକୁ ଗ୍ଲହେଁ । ପାଠରେ ମନ ଦେଲେ ତୁ ସ୍ୱରସ୍ୱତୀ ହୋଇ ବାହାରିବୁ । ଆମ ଅଞ୍ଚଳର ନାଁ ରଖିବୁ । ଶୁଭଦା ଆଜି ଯାହା ହୋଇପାରିଛି, ଯେଉଁଠି ପହଞ୍ଚି ପାରିଛି ସେଥିରେ ନାରଣ ମାଷ୍ଟ୍ରଙ୍କର ଏକ ଗୁରୁତ୍ୱପୂର୍ଣ୍ଣ ଭୂମିକା ଯେ ରହିଛି, ଏ କଥା ଶୁଭଦା ମର୍ମେ ମର୍ମେ ଉପଲବ୍ଧି କରେ । ନାରଣ ମାଷ୍ଟ୍ରଙ୍କ କୋଳରେ ବସି ପାଠ ପଢ଼ୁଥିବା ଅତୀତକୁ ସ୍ମରଣ କଲେ ନାରଣ ମାଷ୍ଟ୍ରଙ୍କ ମୁହଁଟା ଜଗନ୍ନାଥଙ୍କ ମୁହଁ ଭଳି ତା ମନରେ ଭାସିଉଠେ । ଶୁଭଦା ଭକ୍ତିପୂତ ହୃଦୟରେ ପ୍ରଣାମ ଜଣାଏ । ସେ ଭାବେ ଜଗନ୍ନାଥଙ୍କୁ ପ୍ରଣାମ କଲେ ନାରଣ ମାଷ୍ଟ୍ରେ ହିଁ ପାଆନ୍ତି । 'ଗୁରୁର୍ବ୍ରହ୍ମା, ଗୁରୁର୍ବିଷ୍ଣୁ, ଗୁରୁର୍ଦେବଃ ମହେଶ୍ୱରଃ' କଥାଟି ନାରଣ ମାଷ୍ଟ୍ରଙ୍କ ପାଇଁ ହିଁ ଯେମିତି ଲେଖା ହୋଇଛି ।

ସେଇ ନାରଣ ମାଷ୍ଟ୍ରେ ତା ହାତରୁ କି ସାହାଯ୍ୟ ପାଇଁ ଗ୍ଳରି ଥର ଆସି ଲେଉଟିଲେ ? ବିଭିନ୍ନ କ୍ଷେତ୍ରରେ ସାହାଯ୍ୟ ପାଇଁ ଶୁଭଦା ପାଖରେ ବନ୍ଧୁବାନ୍ଧବ, ଚିହ୍ନାଜଣା ଆସି ପହଞ୍ଚିବା କିଛି ବିଚିତ୍ର କଥା ନୁହେଁ । ପରସ୍ପରର ସାହାଯ୍ୟ ଓ ସହଯୋଗରେ ଏ ସଂସାର ଚଳେ । ବେଳ ପଡ଼ିଲେ ଶୁଭଦା ମଧ୍ୟ କାହାଠାରୁ କଥା ପଦକର ହେଲେ ବି ସାହାଯ୍ୟ ଲୋଡ଼େ । କିନ୍ତୁ ନାରଣ ମାଷ୍ଟ୍ରେ ସାହାଯ୍ୟ ପାଇଁ ଏ ବୟସରେ ଗାଁରୁ ଗ୍ଳରି ଥର ଭୁବନେଶ୍ୱର ଆସି ଶୁଭଦା ପାଖରେ ହାତ ପାତିବା ଯେତିକି ବିସ୍ମୟକର, ସେତିକି ବ୍ୟଥାଦାୟକ । ବୋଧହୁଏ ଅଭାବରୁ ସ୍ୱଭାବ ନଷ୍ଟ କଥାଟା ସତ୍ୟ । ନାରଣ ମାଷ୍ଟ୍ରେ ବୃଦ୍ଧ, ବହୁଦିନରୁ ଉପାର୍ଜନହୀନ ପୁଅ ଅପଦାର୍ଥ, ବେକାର । ନାରଣ ମାଷ୍ଟ୍ରଙ୍କ ଉପରେ ବୋଝ ବୋଧହୁଏ ପୁଅକୁ ଗ୍ଳକିରିଟିଏ କରିଦେବା

କମ୍ଭା କଚ୍ଛି ଟଙ୍କା ଧାର ଦେଇ ପୁଅଙ୍କୁ କଚ୍ଛି ବ୍ୟବସାୟରେ ଲଗାଇଦେବା ତାଙ୍କର ଉଦ୍ଦେଶ୍ୟ । ନିଜର ଶକ୍ତି ସାମର୍ଥ୍ୟ ଭିତରର କଥା ହେଲେ ଏ ପ୍ରକାର ସାହାଯ୍ୟ ଅଳ୍ପ ବହୁତ କରିଛି ଶୁଭଦା । ଏ ସନ୍ଥାନରେ ଶୁଭଦାର ବନ୍ଧୁ ଯେତିକ, ଶତ୍ରୁ ତାଠୁ ବେଶି । କାରଣ ସବୁବେଳେ ସମସ୍ତଙ୍କୁ ସାହାଯ୍ୟ କରିହୁଏନା । ଶକ୍ତି ଭିତରର କଥା ହେଲେ ଅନ୍ୟକୁ ଯଥାସାଧ୍ୟ ସାହାଯ୍ୟ କରିବାର ଆନ୍ତରିକ ମନୋବୃତ୍ତି ଶୁଭଦାର ମାତୃଦତ୍ତ ଗୁଣ । ସେଥିପାଇଁ ନିଜେ ବେଶ୍ ଅସୁବିଧାର ସମ୍ମୁଖୀନ ବି ହୁଏ ବେଳେ ବେଳେ । ଆଜିକାଲି ଶୁଭଦା ବି ଅନ୍ୟକୁ ସାହାଯ୍ୟ କରିବା ପାଇଁ ଦୋ ଦୋ ପାଞ୍ଚ ହୁଏ—ସ୍ୱାମୀ ଏବଂ ପିଲାମାନେ ଶୁଭଦା ଉପରେ କେବଳ ତ ଏଇଥିପାଇଁ ନାରାଜ !

ବିକଳ ହୋଇ ଶୁଭଦା ଭାବିଲା—ଆହା ! ନାରଣ ମାଷ୍ଟ୍ରେ ତା ପାଖରେ ସାହାଯ୍ୟପ୍ରାର୍ଥୀ ହୋଇ କାହିଁକି ନିଜକୁ ଶ୍ରେଷ୍ଠ କରିଦେଲେ ? ଆଜିକାଲି କେହି ସାହାଯ୍ୟ ପାଇଁ ଘରକୁ ଆସିଲେ ସମସ୍ତଙ୍କର, ଏପରିକି ଶୁଭଦାର ମଧ୍ୟ ମନ ଓଣା ହୋଇଯାଏ । ଯିଏ ସାହାଯ୍ୟ ପାଏ ସେଇ ତ ହୁଏ ଶୁଭଦାର ନିନ୍ଦୁକ ଓ ବେଳ ପଡ଼ିଲେ ଶତ୍ରୁ ।

ସେପରି ଅସୁବିଧାରେ ନ ପଡ଼ିଥିଲେ ନାରଣ ମାଷ୍ଟ୍ରେ କାହାରି ପାଖରେ ହାତ ପାତିବା ମଣିଷ ନୁହନ୍ତି । ଶୁଭଦା ଭାରି ଛଟପଟ ହେଲା । ତାଙ୍କ ସଙ୍ଗେ ଦେଖା ହେଲାନି ବୋଲି ବିରକ୍ତ ହୋଇ ସମସ୍ତଙ୍କୁ ଗାଳିଦେଲା । ଶେଷକୁ ବୁଝାପଡ଼ିଲା ସାନ ପୁଅ ତାଙ୍କୁ ଫେରାଇ ଦେଇଛି । ତାର ବା ଦୋଷ କଣ ? ସେଦିନ ଶୁଭଦା ଗାଧୁଆ ଘରେ ପଶି ପାଣି ପାଇପ୍ ଖୋଲିଛି ତ ସାନ ପୁଅ କବାଟ ବାଡ଼େଇ ଡାକିଲା—ମା, କିଏ ଜଣେ ଖୋଜୁଛି ।

—କିଏ ? ପାଣି ପଡ଼ିବା ଶବ୍ଦକୁ ଟପେଇ ଚଡ଼ା ଗଳାରେ ଶୁଭଦା ଉତ୍ତର ଦେଲା ।

—ଜାଣିନି । ପୁଅ ଆହୁରି ଜୋର୍‌ରେ ଲେଉଟ ଜବାବ ହାଙ୍କିଲା ।

ଶୁଭଦା ଚିଡ଼ିଯାଇ ପାଟିକଲା—ପଚାରି ବୁଝ୍ କିଏ—କଣ ଦରକାର ମୋ ପାଖରେ—

ପୁଅ ବିରକ୍ତ ହୋଇ କହିଲା—ପଗ୍ଲରଲେ କହୁଛନ୍ତି ମା'ଙ୍କୁ ଡାକ। ଭୁ ପିଲା ଲୋକ, ମୁଁ କଏ ବୋଲି କଣ ବୁଝିବୁ ?

ଶୁଭଦା ମୁହଁରେ ସାବୁନ ଲଗାଉ ଲଗାଉ ଆଖିରେ ସାବୁନ ପଶିଗଲା । ଆଖି ଯେତିକି ପୋଡ଼ି ଉଠିଲା ଶୁଭଦା ସେତିକି ଚିଡ଼ିଉଠି ଭାବିଲା—ସକାଳୁ ସକାଳୁ ନଷ୍ଟପୁ ହିତ ଶତ୍ରୁ କେହି ପହଞ୍ଚି ଗଲେଣି । ଏମିତି ଉତ୍ତର ତ ସେଇମାନେ ଦିଅନ୍ତି ।

ଶୁଭଦା ଭିତରୁ ଥାଇ ପଗ୍ଲରିଲା—କଣ ଜଣେ 'ଭଦ୍ରଲୋକ' ?

—ନା—ଏମିତି ଜଣେ ଯାଉସାଉ ଲୋକ ହୋଇଥିବ । ଭଦ୍ରଲୋକ ଆଦୌ ନୁହେଁ । ପୁଅ ସଙ୍ଗେ ସଙ୍ଗେ ଉତ୍ତର ଦେଲା ।

ଶୁଭଦା ଏଥର ବିରକ୍ତିରେ ଚଲେଇ ଉଠି କହିଲା—ତେବେ ତ ସିଧା କହିଦେବୁ—ମା ଗାଧୁଆ ଘରେ—ଡେରି ହେବ । ପରେ ଆସନ୍ତୁ । ମତେ ବିରକ୍ତ କରୁଛୁ କାହିଁକି ? ମଣିଷ ଛୁଟି ଦିନରେ ଟିକେ ଗାଧୋଇ ବି ପାରିବନି ? ଥରେ ତ କହିଛୁ ଯଦି ଭଦ୍ରଲୋକ ତେବେ ଡ୍ରଇଂ ରୁମ୍‌ରେ ବସାଅ, ନାହିଁ ତ ଗେଟ୍ ପାଖରୁ ବିଦା କରିଦିଅ । ଶୁଭଦା ଜୋର୍‌ରେ ପାଣି ପାଇପ୍ ଖୋଲିଦେଲା ଓ ମୁଣ୍ଡଟାକୁ ଥଣ୍ଡା କରିବା ପର୍ଯ୍ୟନ୍ତ ମୁଣ୍ଡ ଧୋଇଲା ।

ସାନ ପୁଅ ଗେଟ୍ ବାହାରୁ ବୁଢ଼ାଟାକୁ ଘଉଡ଼ାଇ ଦେଲା ।

ସବୁ ଶୁଣି ଶୁଭଦା ଗୁପ୍ତ ବିରକ୍ତିରେ ଗୁମୁରି ଗୁମୁରି କହିଲା—ପିଲାଗୁଡ଼ା ପାଠଶାଠ ପଢ଼ିଲ, ତେବେ ବି ଜାଣି ପାରିଲନି ଭଦ୍ରଲୋକ କଏ ? ହୁଁଃ—କାରଣ ମାଷ୍ଟ୍ର ଯଦି ଭଦ୍ରଲୋକ ନୁହନ୍ତି, ତେବେ ଏ ସଂସାରରେ ଆଉ କେହି ଭଦ୍ରଲୋକ ହୋଇ ପାରିବେନି ।

(ସାନ ପୁଅ ମା'ଙ୍କୁ କିଛି ନ କହି ଭାବୁଥାଏ—ଭଦ୍ରଲୋକ କିଏ ତମେ ଚିହ୍ନିଛ ? ତମେ ପରା ଯେଉଁମାନଙ୍କୁ ଭଦ୍ରଲୋକ ବୋଲି ବୈଠକ ଘରେ ବସାଅ ସମସ୍ତେ କିଛି ନା କିଛି ମତଲବରୁଷ କାମ ପାଇଁ ବୈଠକ ଘରେ ଅପେକ୍ଷା କରିଥାନ୍ତି । କିଏ ଆସିଥାଏ ତମ ପାଖକୁ ପୁଅ, ଝିଅ, ସମ୍ପର୍କୀୟ ପରୀକ୍ଷାର୍ଥୀଙ୍କ ରୋଲ ନମ୍ବର ଧରି । ପରୀକ୍ଷାରେ ନମ୍ବର ବଢ଼ାଇବା ପାଇଁ । କିଏ ଆସିଥାଏ ବାପାଙ୍କୁ ଲୋଭମାଯ଼ି ତୋଷାମଦ କରି କିଛି ଅନୁଚିତ

ଫାଇଦା ଉଠାଇବା ପାଇଁ । ସମସ୍ତେ କୌଣସି ନା କୌଣସିଭାବେ ଦୁର୍ନୀତିଗ୍ରସ୍ତ ମୁଖାପିନ୍ଧା ମଣିଷ ।

ପ୍ରକାଶ୍ୟରେ ସେ ପଚ୍ଛରଲା—କେମିତି ଜାଣିବ କିଏ ଭଦ୍ରଲୋକ ? ପୋଷାକରୁ ତ ? ଦଦରା ବୁଢ଼ାଟା ତ ଏକବାର ଅପରିଚ୍ଛନ୍ନ । ବୈଠକ ଘରେ ପାଦ ପକାଇବାର କଥା ବି ନୁହେଁ ।

ବିକଳ ହୋଇ ଶୁଭଦା ଭାବୁଥାଏ, ସତରେ ଭଦ୍ରଲୋକ କିଏ ? କଣ ତାର ସଂଜ୍ଞା ? ପୁଅକୁ ସେ କଣ ବୁଝାଇବ—କେମିତି ବୁଝାଇବ ଯେ ତାଙ୍କର ପାଦଧୂଳି ତା ବୈଠକ ଘରେ ପଡ଼ିଥିଲେ ବହୁ ପାପର ପ୍ରକ୍ଷାଳନ ହୋଇଥାନ୍ତା ବୋଲି !

ତଥାପି ଘୁଣ ପୋକଟିଏ ସନ୍ତର୍ପଣରେ ନାରଣ ମାଷ୍ଟ୍ରଙ୍କ ପାଇଁ ମନର ନିର୍ମଳ ଭାବନାକୁ ଖୁଣ୍ଟି ଖୁଣ୍ଟି କରି କାଟୁଥାଏ । ନାରଣ ମାଷ୍ଟ୍ରେ ବି ଅନ୍ୟ ସମସ୍ତଙ୍କ ପରି ସାହାଯ୍ୟ ମାଗିଲେ । ସାହାଯ୍ୟର ପରିମାଣ ଯଦି ତା ଶକ୍ତିର ବାହାର ହୁଏ ତେବେ ସେ ବି ଶତ୍ରୁ ହୋଇଯିବେ ଆଉ ଶୁଭଦାର ଅକଲ୍ୟାଣ କରିବେ ?)

ନାରଣ ମାଷ୍ଟ୍ରଙ୍କ ଚିଠିର ଉତ୍ତର ଦେଇ ପାରିଲାନି ଶୁଭଦା । କଣ ଲେଖିବ ? ସାହାଯ୍ୟ କରିବାକୁ ପ୍ରତିଶ୍ରୁତି ଦେଇ, ଯଦି ସେଥିପାଇଁ ଅକ୍ଷମ ହୁଏ ? ନାରଣ ମାଷ୍ଟ୍ରେ ଗମା, ଦାମା ସେ କେହି ନୁହନ୍ତି ଯେ ତାଙ୍କ ପାଖରେ ସହଜରେ ମିଥ୍ୟା ପ୍ରତିଶ୍ରୁତି ଦେଇହେବ ଏବଂ ସେଥିପାଇଁ କିଛି ଗ୍ଲାନି ବି ଆସିବନି ମନରେ । ଯଦି ତାଙ୍କୁ ପ୍ରତିଶ୍ରୁତି ନ ଦେବ ତେବେ ଚିଠିରେ କଣ ବା ଲେଖିବ ? କିଏ ଜାଣେ ନାରଣ ମାଷ୍ଟ୍ରେ ତାଠାରୁ କେତେ ବେଶୀ ଆଶା କରନ୍ତି ! ଫେରିବାଲା ସଙ୍ଗେ ଦର କଷାକଷି ଭଳି ପଇସା ମାଗିଲେ ପାଞ୍ଚ ମିଳେ ମୋଟରେ ଆଜିକାଲି ସାହାଯ୍ୟ ବି ମଗାଯାଏ । ନାରଣ ମାଷ୍ଟ୍ରେ ସେମିତି ଗୋଟାଏ ବୋଓଡ଼ିଆ ସାହାଯ୍ୟ ପାଇଁ ହାତ ପତାଇ ନାହାନ୍ତି ତ ! କିଏ ଜାଣେ, ଆଜିକାଲି ତାଙ୍କର ଅବସ୍ଥା ତ ଅତି ଶୋଚନୀୟ—ଶୁଭଦା ଶୁଣିଛି, ପଥ୍ୟ ତ ଦୂରର କଥା, ନିତ୍ୟମିତ ଖାଦ୍ୟ ବି ଯୁଟେ ନାହିଁ । କଣ ଲେଖିବ ଭାବୁ ଭାବୁ ଶୁଭଦା ଅନେକ ଦିନ ଚୁପ୍ ରହିଗଲା—

ହଠାତ୍ ଦିନେ ରେଜେଷ୍ଟ୍ରି ଡାକରେ ଚିଠିଟିଏ ଆସିଲା ନାରଣ ମାଷ୍ଟ୍ରଙ୍କଠାରୁ । ସ୍ୱାମୀ ଓ ପିଲାଏ ବୁଲିଗଲେଇଲେ—ଆସିଗଲା ପରଓ୍ୱାନା ।

କାଳେ ସାହାଯ୍ୟ ପାଇଁ ଆବେଦନ ପତ୍ରଟି ହଜିଯିବ ବୋଲି ଏଥର ରେଜେଷ୍ଟ୍ରି ଡାକରେ ଆସିଛୁ । ଆଉ ଫାଙ୍କିଦବାର ଯୁ' ନାହିଁ । ଯେତେବେଳେ ହାତ ଧରି ଅକ୍ଷର ଆରମ୍ଭ କରିଥିଲେ ତ ! ଗୁରୁଦକ୍ଷିଣାର ପରିମାଣଟା କେତେ ଅଙ୍କର ଖୋଲି ଦେଖ ।

ଶୁଭଦା ଉତ୍କଣ୍ଠାରେ ଚିଠି ଖୋଲିଲା । ଚିଠି ପଢ଼ି ସ୍ତବ୍ଧ ହୋଇଗଲା । ତାର ଶିକ୍ଷା, ସଭ୍ୟତା, ସାମାଜିକ ସମ୍ମାନ, ଧନ ଦୌଲତର ଷ୍ଟାଟସ୍ ସବୁ କିଛି ଖଣ୍ଡିଏ ମାତ୍ର ଚିଠିରେ ଭୂଲୁଣ୍ଠିତ ହୋଇଗଲେ ।

ଚିଠିଟି ନାରଣ ମାଷ୍ଟ୍ରେ ମୃତ୍ୟୁହନ୍ତି, ତାଙ୍କର ପୁଅ ନବୀନ ଲେଖିଥିଲା—

ପୂଜନୀୟା ଅପା,

ପନ୍ଦର ଦିନ ତଳେ ବାପାଙ୍କର ଦେହାନ୍ତ ହୋଇଗଲା । ମୃତ୍ୟୁ ପର୍ଯ୍ୟନ୍ତ ତମକୁ ଖୋଜୁଥିଲେ । ତାଙ୍କର ଆଶା ଥିଲା, ସେ ତମ ଦୁଆରୁ ଗୃହ ଥର ଫେରିଛନ୍ତି ଶୁଣି ତମେ ନିଶ୍ଚୟ ତାଙ୍କୁ ଦେଖା କରିବାକୁ ଥରେ ହେଲେ ଗାଁକୁ ଧାଇଁ ଆସିବ । କିଛି ନ ହେଲେ ତାଙ୍କୁ ନିଶ୍ଚୟ ସାହାଯ୍ୟ କରିବ ବୋଲି ପ୍ରତିଶ୍ରୁତି ଦେଇ ତମେ ଅନ୍ତତଃ ଚିଠିଖଣ୍ଡେ ଦେବ । ସେଇ ଚିଠି ଖଣ୍ଡିକ ପାଇଥିଲେ ଅନ୍ତତଃ ସେ ଶାନ୍ତିରେ ମରି ପାରିଥାନ୍ତେ ।

ଅପା, ବାପା ଶେଷରେ ଋଣଗ୍ରସ୍ତ ହୋଇ ଗୃହଲିଗଲେ । ସେତିକି ତାଙ୍କର ଦୁଃଖ । ସାନ ଭଉଣୀ ବାହାଘର ବେଳେ ତମ ବାପା ବାଧ କରି ଦୁଇ ହଜାର ଟଙ୍କା ବାପାଙ୍କୁ ଦେଇଥିଲେ । ସେତିକି ନ ଦେଇଥିଲେ ବେଦିରୁ ବର ଉଠି ଯାଇଥାନ୍ତା । ତମ ବାପା ଟଙ୍କାଟା ସାହାଯ୍ୟ କରିଥିଲେ ବି ମୋ ବାପା ତାଙ୍କୁ ଋଣଭାବେ ଗ୍ରହଣ କରି ସୁଝିଦେବେ ବୋଲି ପଣ କରିଥିଲେ । ମୁଁ ତ ଅଯୋଗ୍ୟ ହେଲି, ଋଣ ସୁଝିବ କିଏ ? ଏ ଭିତରେ ତମ ବାପା ବି ଗୃହଲିଗଲେ । କିନ୍ତୁ ମୋ ବାପା ସେ ଋଣଭାରକୁ ଭୁଲିଲେ ନାହିଁ । ତମ ଭାଇଙ୍କୁ କେମିତି ସେ ଟଙ୍କାଟା ଫେରାଇବେ ସେଇ କଥା ଭାବି ଭାବି ସେ ତମର ଦ୍ୱାରସ୍ଥ ହୋଇଥିଲେ । ବାପାଙ୍କ ହିସାବରେ ସୁଧ ମୂଳ ମିଶି ଦଶ ହଜାରରୁ ବେଶି ହେବ । ତେଣୁ ଘରଡ଼ିହ ଖଣ୍ଡିକ କେବଳ ମୋର ପାଇଁ ଛାଡ଼ି ଦେଇ, ବାକି ସବୁ ସମ୍ପତ୍ତି ତମର ନାଁରେ କରିଯାଇଛନ୍ତି ।

ଉଦ୍ଦେଶ୍ୟ, ତମେ ସେ ଜମିର ମୂଲ୍ୟ ବାବଦକୁ ଟଙ୍କାଟା ତମ ଭାଇଙ୍କୁ ଦେଇଦେବ ଏବଂ ଚାହିଁଲେ ଜମିଟା ବିକି କରିଦେଇ ତମ ଟଙ୍କା ତମେ ପାଇଯିବ । ଏତିକ ସାହାଯ୍ୟ ପାଇଁ ସେ ତମ ଘରକୁ ଜଗିବ୍ୟାଧିକୁ ଖାତିର ନ କରି ଯାଇଥିଲେ । ମୋର ଅଯୋଗ୍ୟତା ଏବଂ ବାପାଙ୍କ ଅସହାୟତାର ସୁଯୋଗରେ ଗାଁ ଲୋକେ ଆମର ଜମିକୁ ଶାଗ ମାଛ ମୂଲ୍ୟରେ ନେବାପାଇଁ ଫିକର କରୁଥିଲେ । ନ ହେଲେ ବାପା ଅନେକ ଦିନରୁ ଜମି ବିକ ଋଣ ସୁଝି ଦେଇଥାନ୍ତେ ଓ ଖୋଲା ମନରେ ମରି ପାରିଥାନ୍ତେ । ତମଠାରୁ ଚିଠି ନ ପାଇ ସେ ବୋଝଟାଏ ନେଇ ସଂସାର ଛାଡ଼ିଲେ । ତମେ ଯଦି ଏଥିପାଇଁ ଟିକେ ହଇରାଣ ହୁଅ ତେବେ ତାଙ୍କୁ କ୍ଷମା କରିଦେବ ବୋଲି ବଡ଼ କାକୁତି-ମିନତି କରି ପ୍ରାଣ ଛାଡ଼ିଲେ । ରହିଲି ।

ହତଭାଗ୍ୟ
ନବୀନ

ଶୁଭଦାର ଅନୁମାନ ଅନୁସାରେ ନାରଣ ମାଷ୍ଟ୍ରଙ୍କର ସବୁ ସମ୍ପତ୍ତି ଦଶ ହଜାର ଟଙ୍କାରୁ ଯଥେଷ୍ଟ ଊର୍ଦ୍ଧ୍ୱ ହେବ । ନାରଣ ମାଷ୍ଟ୍ରେ ତା ଉପରେ ଏତେ ବଡ଼ ଦୁଃଖ ଓ ଅପରାଧର ବୋଝ ଲଦି ଦେଲେ କାହିଁକି ? ବୋଧହୁଏ ତା ଉପରେ ତାଙ୍କର ସ୍ନେହ ଭରସାର ଆଧିକ୍ୟ ଯୋଗୁଁ ସେ ଏପରି କଲେ !

ନିଜ ବାପାଙ୍କ ମୃତ୍ୟୁ ସମ୍ବାଦ ପାଇ ଶୁଭଦା ଏମିତି ଦିନେ ଲୁହ ଝରାଇ କାନ୍ଦୁଥିଲା । କିନ୍ତୁ ଆଜ ସେ ଲହୁ ଝରାଇ କାନ୍ଦୁଛି । କାରଣ ସେଦିନ ତାର ଆଖି ଫଟାଇ ଲୁହ ହିଁ ଝରୁଥିଲା । ଆଜ ହୃଦୟ ଫାଟି ଆସିଦେଇ ଲହୁ ଝରୁଛି ।

